# ଶ୍ରୀଲଳିତାସହସ୍ରନାମସ୍ତୋତ୍ର

(ନାମାବଳି, ଖଡ୍‌ଗମାଳା, ଜପାର୍ଥେ ଅଷ୍ଟୋତ୍ତରଶତନାମ
ତଥା ସଂସ୍କୃତ ଓଡ଼ିଆରେ ତ୍ରିପୁରସୁନ୍ଦରୀସ୍ତୋତ୍ର ସମେତ)

ସମ୍ପାଦକ

ମହାମେଧାନନ୍ଦନାଥ

ପ୍ରକାଶକ

ଶ୍ରୀମତୀ ସୁଜାତା ମହାନ୍ତି, ବି. ଏ.
ଶ୍ରୀ ଗିରୀଶ ଚନ୍ଦ୍ର ମହାନ୍ତି, ଏମ୍.ଏ., ଏଲ୍.ଏଲ୍.ବି.,
ଆଡ୍‌ଭୋକେଟ୍

ମୂଲ୍ୟ—ଶ୍ରୀବିଦ୍ୟା ମନ୍ଦିର ନିର୍ମାଣାର୍ଥେ ଯଥାଶକ୍ତି ସହିଙ୍କ ଦାନ ଓ ସଭକ୍ତି ନିତ୍ୟ ପାଠ

# ଶ୍ରୀଲଳିତାସହସ୍ରନାମସ୍ତୋତ୍ର

ସମ୍ପାଦକ : ମହାମେଧାନନ୍ଦନାଥ
ଡି-୧୧୭, ମ୍ୟୁଜିୟମ୍ ଫ୍ଲାଟ୍, ଭୁବନେଶ୍ୱର-୭୫୧୦୧୪
ପ୍ରକାଶକ : ଶ୍ରୀମତୀ ସୁଜାତା ମହାନ୍ତି, ବି.ଏ.
ଶ୍ରୀ ଗିରିଶ ଚନ୍ଦ୍ର ମହାନ୍ତି, ଏମ୍.ଏ., ଏଲ୍-ଏଲ୍.ବି.,
ଆଡ୍‌ଭୋକେଟ୍
ମୁଦ୍ରକ : ସନ୍ ସାଇନ୍ ପ୍ରିଣ୍ଟିଂ ପ୍ରେସ୍
ସାମନ୍ତରାପୁର, ଭୁବନେଶ୍ୱର-୭୫୧୦୦୨, [ଫୋନ-୫୫୪୨୨]
ପ୍ରଥମ ସଂସ୍କରଣ : ୧ ଜାନୁଆରୀ ୧୯୮୭, ଗୁରୁବାର
ମୂଲ୍ୟ : ଶ୍ରୀବିଦ୍ୟା ମନ୍ଦିର ନିର୍ମାଣାର୍ଥେ
ଯଥାଶକ୍ତି ସଶ୍ରଦ୍ଧ ଦାନ ଓ ସଭକ୍ତି ନିତ୍ୟ ପାଠ

## SRI LALITA SAHASRANAMA STOTRA

Editor : **MahamedhanandaNath**
D-117, Museum Flats
Bhubaneswar-751014
Publishers : **Smt. Sujata Mohanty,** B.A.
**Girish Chandra Mohanty,** M.A., LL.B.
Advocate
Printers : **Sun Shine Printing Press**
Samantarapur, Bhubaneswar-751002
[Phone-55422]
First Edn. : **1st January 1987, Thursday**
Price : For construction of **Srividya Mandir**
loving contribution according to ability
and regular recitation with devotion.

ଶ୍ରୀଚକ୍ରେ ବ୍ରହ୍ମଣି ଶ୍ରୀଶିବମିଥୁନମସ୍ତେ କେବଲେଽସ୍ମିନ୍ ପରେ ଚ
କାମେଶସ୍ୟାଙ୍କଦେଶେ ବିଲସତି ଲଲିତା କେବଲାନନ୍ଦବଲ୍ଲୀ ।
ନତ୍ୟଂ ସଂବିଚ୍ଚିଦଗ୍ନୌ ଜୟତି ନନୁ ମହା-ଯାଗ ସଂତର୍ପିତା ସା
ବେଦାନାଂ ଲକ୍ଷ୍ୟଭୂତା ବିତରତୁ ପରମା ମଙ୍ଗଳଂ ବ୍ରହ୍ମଯୋନିଃ ॥

# ସୂଚୀପତ୍ର



## ଶ୍ରୀଲଲିତାସହସ୍ରନାମସ୍ତୋତ୍ର :

# ଶ୍ରୀବିଦ୍ୟା (ଲଳିତା) ଉପାସନାର କେତେକ ଜ୍ଞାତବ୍ୟ କଥା

ଶ୍ରୀବିଦ୍ୟା ସର୍ବଶ୍ରେଷ୍ଠ ବିଦ୍ୟା । ଶ୍ରୀବିଦ୍ୟା ସିଦ୍ଧିରେ ସର୍ବସିଦ୍ଧି ।

ଏହାର ଦେବୀ ଦଶମହାବିଦ୍ୟା ଅନ୍ତର୍ଗତ ଶୁଦ୍ଧାଢଣ୍ଟୁଳି ମହାଦେବୀ ପରାଶକ୍ତି ରାଜରାଜେଶ୍ୱରୀ ମହାରାଜ୍ଞୀ ମହାତ୍ରିପୁରସୁନ୍ଦରୀ ଷୋଡଶୀ ଲଳିତା । ତାଙ୍କ ମନ୍ତ୍ର ବେଦସଂମତ ଓ ସେହି ମନ୍ତ୍ର ସକଳମନ୍ତ୍ରର ମୂଳ ଆଧାର ହେତୁ 'ମନ୍ତ୍ରରାଜ' । ଅନ୍ୟ ଦେବଦେବୀଙ୍କ ଯନ୍ତ୍ରରୂପ ତାଙ୍କ ଯନ୍ତ୍ରର ଅଂଶବିଶେଷ ହୋଇଥିବାରୁ ଶ୍ରୀଦେବୀଙ୍କ ଶ୍ରୀଯନ୍ତ୍ରକୁ କୁହାଯାଏ 'ଚକ୍ରରାଜ' । ଶ୍ରୀବିଦ୍ୟୋପାସକର ସର୍ବମନ୍ତ୍ରାଧିକାର ଓ ସର୍ବଶାସ୍ତ୍ରାଧିକାର ପରମ୍ପରାକ୍ରମେ ସ୍ୱୀକୃତ । ଭୋଗ-ମୋକ୍ଷପ୍ରଦା ଏହି ବିଦ୍ୟା କେବଳ ଗୁରୁମୁଖଗମ୍ୟ ଅଟେ । ଏଥିରେ ଗୁରୁ ହିଁ 'ସର୍ବକାରଣଭୂତା ଶକ୍ତି' । ଗୁରୁମୁଖଲବ୍ଧ ବିଦ୍ୟା ବା ମନ୍ତ୍ରର ଅବିରତ ଜପ ଓ ଇଷ୍ଟଦେବୀଙ୍କ ସତତ ସ୍ମରଣଦ୍ୱାରା ସିଦ୍ଧି ଲାଭ ହୁଏ । 'ଏକଗୁରୁପାସ୍ତିରସଂଶୟଃ' (କଳ୍ପସୂତ୍ର, ୧।୨୦) ଜଣେ ଗୁରୁଙ୍କର ଉପାସନା କଲେ ସାଧନା ମାର୍ଗରେ ସଂଶୟ ସୃଷ୍ଟି ହୁଏ ନାହିଁ । ଜୀବନକୁ ଶୁଦ୍ଧ ଓ ସୁନ୍ଦର କରିବାକୁ ହେଲେ ସୁନ୍ଦରୀ ଲଳିତାଙ୍କ ଉପାସନା ଆବଶ୍ୟକ । ଲଳିତା ଉପାସକଗଣ ଇକ୍ଷୁଦଣ୍ଡ ଭକ୍ଷଣ କରିବା ଅନୁଚିତ । ଦିନରେ କାଳୀ ତାରାଙ୍କର ସ୍ମରଣ କରିବା ଉଚିତ ନୁହେଁ । ସ୍ତ୍ରୀମାନଙ୍କଠାରେ ଦେବୀବୁଦ୍ଧି ଏକ ଅପରିହାର୍ଯ୍ୟ ମୌଳିକ ଆବଶ୍ୟକତା । ସବୁବେଳେ ନିଜକୁ ଦେବୀରୂପରେ ତଦ୍‌ଭାବଭାବିତ କରି ଗୁରୁଶାସନ ଅନୁସାରେ ବହିର୍ଯାଗ ଓ ଅନ୍ତର୍ଯାଗ କରିବା ଉଚିତ । ପ୍ରତ୍ୟହ ବିଧିବଦ୍ଧ ପୂଜା ଓ ଜପ ପରେ 'ଶ୍ରୀଲଳିତା-ସହସ୍ରନାମ' ନିତ୍ୟ ପାଠ ସର୍ବଥା କରଣୀୟ ।

"ଯତ୍ରାସ୍ତି ଭୋଗୋ ନ ହି ତତ୍ର ମୋକ୍ଷୋ ଯତ୍ରାସ୍ତି ମୋକ୍ଷୋ ନ ହି ତତ୍ର ଭୋଗଃ ।
ଶ୍ରୀସୁନ୍ଦରୀସେବନତତ୍ପରାଣାଂ ଭୋଗଶ୍ଚ ମୋକ୍ଷଶ୍ଚ କରସ୍ଥ ଏବ ॥
ଯଦା ଜାଗର୍ତ୍ତି ସା ଦେବୀ ବହୁଭିଃ ପୁଣ୍ୟସଂଚୟୈଃ ।
ତଦା ସର୍ବାଣି କାର୍ଯ୍ୟାଣି ସ୍ୱୟମେବ କରୋତି ସା ॥"

# ଶ୍ରୀ ଶ୍ରୀ ମହାତ୍ରିପୁରସୁନ୍ଦର୍ଯ୍ୟୈ ନମଃ



ବାଳାର୍କାୟୁତତେଜସାଂ ତ୍ରିନୟନାଂ ରକ୍ତାମ୍ବରୋଲ୍ଲାସିନୀଂ
ନାନାଳଂକୃତିଭ୍ରାଜମାନବପୁଷଂ ବାଳେନ୍ଦୁଯୁକ୍‌ଶେଖରାମ୍ ।
ହସ୍ତୈରିକ୍ଷୁଧନୁଃସୃଣିଂ ସୁମଶରଂ ପାଶଂ ମୁଦା ବିଭ୍ରତୀଂ
ଶ୍ରୀଚକ୍ରସ୍ଥିତସୁନ୍ଦରୀଂ ତ୍ରିଜଗତାମାଧାରଭୂତାଂ ଭଜେ ॥

ओ३म्
श्री श्री ललिताम्बिकायै नमः
छायापीठाधीश्वर
जगद्गुरु १००८ श्री अद्वयानन्दनाथ सरस्वतीपादानां



## श्रीमुखम्

श्रीमत्त्रिपुरसुदरी तस्या उपासना तत्संबन्धिनी विद्या च श्रीविद्येत्यभिधीयते । दशा-महा-विद्यासु षोडशीति प्रसिद्धा सा खलु पराम्बाशुद्धातिशुद्ध निखिल-सौन्दर्य-माधुर्य्य-गाम्भीर्य्य-ऐश्वर्य्य-विमण्डिता श्री श्री ललिताम्बा लोपामुद्रा-अगस्त्य-नन्दिकेश्वर-दुर्वासादिभिराकलिता, गौडपाद-शङ्कर-भास्कर प्रभृतिभिराराधिता, गुह्यातिगुह्यविद्यात्वेनागमशास्त्रेषु परिगृह्यते ।

"यज्ञविद्या महाविद्या गुह्यविद्या च शोभने !
आत्मविद्या च देवि ! त्वं विमुक्तिफल दायिनि !
आन्वीक्षिकी त्रयीवार्त्ता दण्डनीतिस्त्वमेव हि"

इत्यादि विष्णुपुराण प्रमाणतः सर्ववेदशास्त्रसार-सर्वस्वभूतेयं श्रीविद्येति सिद्धम्। सर्वेषु शङ्करपीठेषु चास्या एव यन्त्ररूपं पूजितं भवति। सर्वातिशायिन्या अमुष्या विद्यायाः संप्रदायज्ञानेन सकलतन्त्राणां गहनतत्त्वजातमचिरेणैव सचतुर्वर्गं पराम्बिकाया परमप्रसादेन शुद्धसाधकसज्जनस्वान्त-र्विषयतामेति। उड्डीयाण इत्यपराभिधेये विमलाध्युषितपवित्र पुरुषोत्तमधामन्युत्कलभुमौ तन्त्रसम्मतं विरजसः पीठम्, भुवनेश्वर्याः -- एकाम्रपीठम्, परशुरामपूजित परमेश्वर्याः महेन्द्रपीठं च वर्त्तन्ते। तथाऽपि तत्र ओड्याणपीठ-निलयायाः पराम्बायाः षोड़श्याः त्रिपुरसुन्दर्याः श्रीललितायाः शुद्धविद्यायाः प्रसारो नास्तीति हेतोः, तत्र पुनः शुद्धनरस्यैव सुन्दरी विद्यायामधिकार इति वचनात् शुद्धसत्त्वविद्व-त्सज्जनानामुपकृतये तत्रत्याय वेदवेदान्त-साहित्यालङ्कार-व्याकरण-ज्योतिष-धर्मशास्त्र-तन्त्राद्यखिल-शास्त्रजुषे बहुभाषा-विदुषे सर्वतन्त्रस्वतन्त्राय चास्मच्छिष्याय "महामेधानन्द-नाथ सरस्वती" ति— दीक्षानामवते श्रीदुःखिश्याम-शास्त्रिणे, निखिलवेदवेदाङ्गशास्त्रपुराणेतिहासादि सर्वप्रमाण शब्दकदम्ब-विग्रहां महामन्त्रां महातन्त्रां छन्दःसारां शास्त्रसारां तन्त्रसारां आत्मविद्यां महाविद्यां श्रीविद्यां प्रदाय, तस्य सकलजनकल्याण-करकर्मणि सततमत्रत्य-बहुयोगिनी प्रपूजित छायापुर योगिनी-पीठवासि, मधुमक्षिकारूपागस्त्य तपस्तुष्टपराम्बाश्रीश्रीललिता-म्बाशीःप्रसाद पुरःसर शुभंस्याद्भित च भूयादिति शं च श्रीं च कामयते —

श्री श्री भासुरानन्दनाथशिष्यः
सद्गुरुवर्याणां चरणपादुकाधूलिः
स्वामी अद्वयानन्दनाथ सरस्वती
ता० ४-२-१९७३
मक्षिकागिरि योगिनीपीठस्थ—

## ଛାୟାପୀଠାଧୀଶ୍ୱର
## ଜଗଦ୍‌ଗୁରୁ ୧୦୦୮ ଶ୍ରୀ ଅଦ୍ୱୟାନନ୍ଦ ନାଥ ସରସ୍ୱତୀଙ୍କ
# ଶ୍ରୀମୁଖ

ଶ୍ରୀମତ୍-ତ୍ରିପୁରସୁନ୍ଦରୀ, ତାଙ୍କର ଉପାସନା ଓ ତାଙ୍କ ସମ୍ବନ୍ଧୀୟ ବିଦ୍ୟାକୁ କୁହାଯାଏ **ଶ୍ରୀବିଦ୍ୟା** । ଦଶମହାବିଦ୍ୟା ମଧ୍ୟରେ 'ଷୋଡଶୀ' ନାମରେ ପ୍ରସିଦ୍ଧ ପରମ-ମାତା ଶୁଦ୍ଧାତିଶୁଦ୍ଧ, ନିଖିଳ ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ, ଗାମ୍ଭୀର୍ଯ୍ୟ ଓ ଐଶ୍ୱର୍ଯ୍ୟ ବିମଣ୍ଡିତା ଶ୍ରୀ ଲଳିତା ମାତା ଲୋପାମୁଦ୍ରା, ଅଗସ୍ତ୍ୟ, ନନ୍ଦିକେଶ୍ୱର, ଦୁର୍ବାସା ପ୍ରଭୃତିଙ୍କ ଦ୍ୱାରା ଉପାସ୍ୟା ରୂପେ ଗୃହୀତା ତଥା ଗୌଡ଼ପାଦ, ଶଙ୍କର, ଭାସ୍କରରାୟ ପ୍ରଭୃତିଙ୍କ ଦ୍ୱାରା ଆରାଧିତା ହୋଇ ଗୁହ୍ୟାତିଗୁହ୍ୟ ବିଦ୍ୟା ଭାବରେ ଆଗମ ଶାସ୍ତ୍ରରେ ପରିଗୃହୀତ ।

"ଯଜ୍ଞବିଦ୍ୟା ମହାବିଦ୍ୟା ଗୁହ୍ୟବିଦ୍ୟା ଚ ଶୋଭନେ ।
ଆତ୍ମବିଦ୍ୟା ଚ ଦେବି ତ୍ୱଂ ବିମୁକ୍ତିଫଳ ଦାୟିନୀ ।
ଆନ୍ୱୀକ୍ଷିକୀ ତ୍ରୟୀବାର୍ତ୍ତା ଦଣ୍ଡନୀତିସ୍ତ୍ୱମେବ ହି ।"

—ଏହି ବିଷ୍ଣୁପୁରାଣ ପ୍ରମାଣାନୁସାରେ ସର୍ବବେଦଶାସ୍ତ୍ରର ସାରସର୍ବସ୍ୱ ହିଁ ହେଉଛି 'ଶ୍ରୀବିଦ୍ୟା' । ସମସ୍ତ ଶଙ୍କର ପୀଠମାନଙ୍କରେ ଏହି ଦେବୀଙ୍କର ଯନ୍ତ୍ରରୂପ (ଶ୍ରୀଚକ୍ର) ପୂଜା ପାଉଛନ୍ତି । ଏହି ସର୍ବୋତ୍କୃଷ୍ଟ ବିଦ୍ୟାର ସମ୍ପ୍ରଦାୟ ଜ୍ଞାନଦ୍ୱାରା ସକଳଶାସ୍ତ୍ରର ଗମ୍ଭୀରତତ୍ତ୍ୱସମୂହ ଅତିଶୀଘ୍ର ଚତୁର୍ବର୍ଗଫଳ ସହିତ ପରାମ୍ବାଙ୍କ ପରମ ପ୍ରସନ୍ନତାରୁ ଶୁଦ୍ଧ ସାଧକ ସଜ୍ଜନର ହୃଦ୍ୟ ହୋଇଥାଏ । ଉଡ୍‌ଡୀୟାଣ ପୀଠ ନାମାନ୍ତର କ୍ଷେତ୍ରେଶୀ ବିମଳାଙ୍କ ନିବାସକ୍ଷେତ୍ର ପବିତ୍ର ପୁରୁଷୋତ୍ତମ ଧାମ ଉତ୍କଳଭୂମିରେ ତନ୍ତ୍ରସମ୍ମତ ବିରଜାପୀଠ, ଭୁବନେଶ୍ୱରୀଙ୍କ ଏକାମ୍ରପୀଠ, ପରଶୁରାମଙ୍କ ଉପାସ୍ୟ ପରମେଶ୍ୱରୀଙ୍କ ମହେନ୍ଦ୍ରପୀଠ ଅବସ୍ଥିତ । ତଥାପି ସେଠାରେ ଓଡ୍ୟାଣପୀଠନିଳୟା ପରାମ୍ବା ଷୋଡ଼ଶୀ ତ୍ରିପୁରସୁନ୍ଦରୀ ଶ୍ରୀଲଳିତାଙ୍କ ଶୁଦ୍ଧବିଦ୍ୟାର ପ୍ରସାର ନାହିଁ ବୋଲି ଏବଂ ପୁଣି ସେଥିରେ ଶୁଦ୍ଧାତ୍ମା ଲୋକର ହିଁ ସୁନ୍ଦରୀବିଦ୍ୟାରେ ଅଧିକାର ବୋଲି କୁହାଯାଇଥିବାରୁ ଶୁଦ୍ଧାତ୍ମା

ସତ୍ତ୍ୱଗୁଣଯୁକ୍ତ ବିଦ୍ୱଜ୍ଜନମାନଙ୍କର ଉପକାର ସକାଶେ ଉଦିତା (ଉତ୍କଳୀୟ) ବେଦ, ବେଦାନ୍ତ, ସାହିତ୍ୟ, ଅଲଙ୍କାର, ବ୍ୟାକରଣ, ଜ୍ୟୋତିଷ, ଧର୍ମଶାସ୍ତ୍ର, ତନ୍ତ୍ର ପ୍ରଭୃତି ଅନେକ ଶାସ୍ତ୍ରଜ୍ଞ ବହୁଭାଷାବିଦ୍ୱାନ୍ ସର୍ବତନ୍ତ୍ରସ୍ୱତନ୍ତ୍ର ମୋର ଶିଷ୍ୟ 'ମହାମେଧାନନ୍ଦନାଥ' ଦୀକ୍ଷାନାମଯୁକ୍ତ ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ ଶାସ୍ତ୍ରୀଙ୍କ ନିଖିଳ ବେଦବେଦାଙ୍ଗଶାସ୍ତ୍ର-ପୁରାଣ-ଇତିହାସାଦି ସର୍ବପ୍ରମାଣ-ଶବ୍ଦସମୂହାତ୍ମକ-ଶରୀର ମହାମନ୍ତ୍ର ମହାତନ୍ତ୍ର ଛନ୍ଦସାର ଶାସ୍ତ୍ରସାର ତନ୍ତ୍ରସାର ଆତ୍ମବିଦ୍ୟା ମହାବିଦ୍ୟା ଶ୍ରୀବିଦ୍ୟା ପ୍ରଦାନ କରି, ତାଙ୍କର ସକଳ ଜନକଲ୍ୟାଣକର କର୍ମରେ ସବୁବେଳେ ଅଧିତ୍ୟ ବହୁଯୋଗିନୀ ପ୍ରପୂଜିତ ଛାୟାପୁର ଯୋଗିନୀପୀଠବାସିନୀ ମଧୁମକ୍ଷିକାରୂପାଗସ୍ତ୍ୟମହର୍ଷିଙ୍କ ତପସ୍ୟାତୁଷ୍ଟା ପରମ୍ବା ଶ୍ରୀ ଶ୍ରୀ ଲଳିତାମ୍ବାଙ୍କ ପ୍ରସନ୍ନତା ସମ୍ବଳିତ ଶୁଭ ହେଉ ଓ ହିତ ହେଉ ବୋଲି ମଙ୍ଗଳ ଓ ଶ୍ରୀ କାମନା କରୁଛି ।

|| ଇତି ||

ଶ୍ରୀ ଶ୍ରୀ ଭାସୁରାନନ୍ଦ ନାଥ ଶିଷ୍ୟ
ସଦ୍‌ଗୁରୁବରଙ୍କ ଚରଣ ପାଦୁକା ଧୂଳି
**ସ୍ୱାମୀ ଅଦ୍ୱୟାନନ୍ଦ ନାଥ ସରସ୍ୱତୀ**
ତା ୪-୨-୧୯୮୩
ମକ୍ଷିକାଗିରି ଯୋଗିନୀପୀଠସ୍ଥ

Sri Lalita Mahila Samajam,
(P.O.) TIRUEENGOIMALAI
(S.O.) Manamedu, Tiruchy,
Pin-621 209,
Phone : Musiri-61



# ମୁଖଶାଳା

ନମୋଽସ୍ତ୍ୱନନ୍ତାୟ — ସହସ୍ରମୂର୍ତ୍ତୟେ
ସହସ୍ରପାଦାକ୍ଷି— ଶିରୋରୁବାହବେ ।
"ସହସ୍ର ନାମ୍ନେ" ପୁରୁଷାୟ ଶାଶ୍ୱତେ
ସହସ୍ରକୋଟୀ— ଯୁଗଧାରଣେ ନମଃ ॥

ସହସ୍ର ଶବ୍ଦର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଓ ମାନ୍ୟତା ରହିଛି । ବେଦରେ ବହୁ ମନ୍ତ୍ରରେ ସହସ୍ର ଶବ୍ଦ ବ୍ୟବହୃତ ହୋଇଛି, ଯଥା—'ଓଁ ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍'' (ପୁରୁଷ ସୂକ୍ତ) । ଜ୍ୟୋତିଷରେ ଗଣ୍ଡଦୋଷ-ଶାନ୍ତି ପାଇଁ "ସହସ୍ରାକ୍ଷ" ମନ୍ତ୍ରପୂତିତ ଶୃଙ୍ଗ କଳଶ କୁଙ୍କୁମ-ଚନ୍ଦନ-କୁଡ଼-ଗୋରଚନା-ଘୃତ-ମିଶ୍ରିତ ଜଳରେ ସ୍ନାନ କରାଇ ଦିଆଯାଏ । ପ୍ରତି ଇଷ୍ଟ ମନ୍ତ୍ରର ପୁରଶ୍ଚରଣ ପାଇଁ ଜପ ସଂଖ୍ୟା ସହସ୍ରରେ ନିର୍ଦ୍ଧାରିତ ହୋଇଅଛି । ବୌଦ୍ଧମାନେ ସହସ୍ର ଶବ୍ଦର ପବିତ୍ରତା ଦୃଷ୍ଟିରେ ବହୁ ଗ୍ରନ୍ଥକୁ କହୁଥିଲେ ସାହସ୍ରିକା—ଯଥା "ଅଷ୍ଟସାହସ୍ରିକା ପ୍ରଜ୍ଞାପାରମିତା" । ବ୍ରହ୍ମବିଦ୍ୟା ପଞ୍ଚଦଶୀ ମନ୍ତ୍ରରେ ସ ଓ ହ ଅକ୍ଷରର ପୁନଃ ପୁନଃ ସଂଯୋଜନ ଦେଖାଯାଏ । ଯୋଗ-ଶାସ୍ତ୍ରରେ କୁହାଯାଇଛି ଯେ "ହ-କାରେଣ ବହିର୍ଯାତି ସ-କାରେଣ ବିଶେତ୍ ପୁନଃ" । "ହଂସମନ୍ତ୍ର" ହିଁ ସର୍ବଶ୍ରେଷ୍ଠ ମନ୍ତ୍ର ବୋଲି କୁହାଯାଏ । ସହସ୍ର ଶବ୍ଦରେ ସ, ହ, ସ ଓ ର ଅଛି । ର ଅକ୍ଷର ଆଗ୍ନେୟ ଓ କଳିଦୋଷନାଶକ । ଲଳିତା-ସହସ୍ରନାମର ମୂର୍ଦ୍ଧନ୍ୟ ଭାଷ୍ୟକାର ଭାସ୍କର ରାୟ ସ୍ୱୀୟ ଭାଷ୍ୟର ନାମ ରଖିଥିଲେ "ସୌଭାଗ୍ୟଭାସ୍କର" । ସତ୍ୟ ସତ୍ୟ ହିଁ ଏହା ପାଠକଙ୍କ ସୌଭାଗ୍ୟ-ସୂର୍ଯ୍ୟ ଉଦୟ କରୁଅନ୍ତୁ ।

ଓଡ଼ିଶାର ଜନସାଧାରଣ ପ୍ରବଳ ଭାବରେ ଧର୍ମପରାୟଣ । ସେଥିପାଇଁ ସବୁ ମତର ଓ ସବୁ ପ୍ରକାର ପଥ (ପନ୍ଥା)ର ବାବାଜୀ ଓ ମାତାଙ୍କ ମଠ-ମନ୍ଦିର

ଆଖଡ଼ା-ଗୋଷ୍ଠୀ ଓଡ଼ିଶାରେ ଥିବା ଦେଖାଯାଏ । କିନ୍ତୁ ମହାଦେବୀ ଲଳିତାଙ୍କ ମନ୍ଦିର, କି ମଠ, କି ଉପାସକ-ଗୋଷ୍ଠୀ ଓଡ଼ିଶାରେ ବିରଳ; ଯେଉଁ ଓଡ଼ିଶାରେ କି ଗ୍ରାମେ ଗ୍ରାମେ ବନେ ବନେ, ନଗରେ ନଗରେ, ଶକ୍ତି-ଉପାସନା ପ୍ରାଚୀନ କାଳରୁ ଚାଲିଆସୁଛି । ଏହାର ଗୋଟିଏ କାରଣ ହେଉଛି ଯେ, ଓଡ଼ିଶାରେ ଲଳିତାଙ୍କ ସ୍ଥାନ ଅଧିକାର କରିଛନ୍ତି ଗୋପାଳକୃଷ୍ଣ । ଦ୍ୱିତୀୟ କାରଣ ହେଉଛି ଲଳିତା-ଉପାସନାର ଗୋପନୀୟତା । ଶୁଣାଯାଏ ଯେ ଶ୍ରୀମନ୍ଦିରର ରତ୍ନବେଦୀ ଉପରେ "ଶ୍ରୀଯନ୍ତ୍ର" ଅଙ୍କିତ ଓ ତା'ଉପରେ ଶ୍ରୀଜଗନ୍ନାଥଙ୍କ ଅଧିଷ୍ଠାନ । ବିଷ୍ଣୁ-ସହସ୍ରନାମର ପୂର୍ବ ଭାଗରେ ଯେପରି ଜଗନ୍ନାଥ ଶବ୍ଦ ଅଛି ("ତସ୍ୟ ଲୋକପ୍ରଧାନସ୍ୟ ଜଗନ୍ନାଥସ୍ୟ ଭୂପତେ"), ସେହିପରି ଲଳିତା-ସହସ୍ରନାମରେ ଅଛି ଜଗନ୍ନାଥା ଶବ୍ଦ ("ଚରାଚର ଜଗନ୍ନାଥା ଚକ୍ରରାଜନିକେତନା") । ଚକ୍ରରାଜର ତ୍ରିକୋଣ ସଂଖ୍ୟା ୪୩ ଓ ଜଗନ୍ନାଥଙ୍କ ରଥର ଚକ ସଂଖ୍ୟା ମଧ୍ୟ ତେତାଳିଶି । ତ୍ରିକୋଣ ଯେପରି ଶକ୍ତିର, ଚକ୍ର ସେହିପରି ବ୍ରହ୍ମର ପ୍ରତୀକ ।

| ଶ୍ରୀଚକ୍ର ବା ଚକ୍ରରାଜ :— | | ପୁରୀର ରଥଯାତ୍ରା :— | | | |
|---|---|---|---|---|---|
| ମୂଳ ତ୍ରିକୋଣ | ୧ | ଦେବଦଳନ | ରଥର | ଚକ | ୧୨ |
| ଅଷ୍ଟାର | ୮ | ତାଳଧ୍ୱଜ | ,, | ,, | ୧୪ |
| ଅନ୍ତଃ ଓ ବହିର୍ଦଶାର | ୨୦ | ନନ୍ଦିଘୋଷ | ,, | ,, | ୧୬ |
| ଚତୁର୍ଦ୍ଦଶାର | ୧୪ | ସୁଦର୍ଶନ | ,, | ଚକ୍ର | ୧ |
| ମୋଟ | ୪୩ | ମୋଟ | | | ୪୩ |

ଓଡ଼ିଶାର ଧର୍ମଭାବନା ଜଗନ୍ନାଥକେନ୍ଦ୍ରିକ ହୋଇଥିବାରୁ ଜଗନ୍ନାଥ-ତତ୍ତ୍ୱ ଭିତରେ ପଞ୍ଚୋପାସନା (ଗଣେ ନାରାୟଣେ ରୁଦ୍ରେ ଅମ୍ବିକା ଭାସ୍କରେ ତଥା) ତତ୍ତ୍ୱର ସମନ୍ୱୟ ଘଟାଇବା ପାଇଁ ବରାବର ଉଦ୍ୟମ ଚାଲି ଆସୁଛି । ସୁତରାଂ ଲଳିତା-ସହସ୍ରନାମ ସ୍ତୋତ୍ରର 'ଜଗନ୍ନାଥା' ଶବ୍ଦ ଆକସ୍ମିକ ନୁହେଁ । ଏହା ସୁପରିକଳ୍ପିତ ଓ ଶାସ୍ତ୍ରୀୟ । ଲଳିତା-ସହସ୍ର-ନାମସ୍ତୋତ୍ରରେ ଲଳିତା

ହୋଇଛନ୍ତି "ଗୋପ୍‌ତ୍ରୀ ଗୋବିନ୍ଦରୂପିଣୀ" । ପ୍ରାଚୀନ "ତନ୍ତ୍ରରାଜ ତନ୍ତ୍ର"ର ୩୫ତମ ପଟଳରେ କୁହାଯାଇଛି ଯେ ନିଜର ଆତ୍ମା ହିଁ ଲଳିତା ("ସ୍ୱାତ୍ମୈବ ଦେବତା ପ୍ରୋକ୍ତା ଲଳିତା ବିଶ୍ୱବିଗ୍ରହା") । ସୁତରାଂ ଲଳିତା ହେଉଛନ୍ତି ଆତ୍ମବିଦ୍ୟା ବା ବ୍ରହ୍ମବିଦ୍ୟା । ଲଳିତା-ବିଦ୍ୟାର ଗୋପାଳସ୍ୱରୂପତ୍ୱ ବିଷୟରେ "ତନ୍ତ୍ରରାଜ ତନ୍ତ୍ର"ରେ କୁହାଯାଇଛି :—

କଦାଚିଦାଦ୍ୟା ଲଳିତା ପୁଂରୂପା କୃଷ୍ଣବିଗ୍ରହା
ସ୍ୱବଂଶ.ନାଦସମାରମ୍ଭା—ଦକରୋଦ୍ ବିବଶଂ ଜଗତ୍ । ୮୪ ॥
(ତନ୍ତ୍ରରାଜତନ୍ତ୍ର, ୩୪ତମ ପଟଳ )

ଲଳିତା ହିଁ ଶ୍ରୀକୃଷ୍ଣ । ଏହା ଅନୁଭବକୁ ଆସିବା କୃପାସାପେକ୍ଷ । ମୋ ନିଜ ଅନୁଭବ କଥା କହୁଛି । ମୋର ବୈଷ୍ଣବ ପରିବାରରେ ଜନ୍ମ । ପିଲାଦିନୁ ବୈଷ୍ଣବ ସଂସ୍କୃତି ଭିତରେ ବଢ଼ିଥିଲି । ଥରେ ଗୋଟିଏ ପୁସ୍ତକ ତାଲିକା ଉପରେ ଆଖି ବୁଲାଉ ବୁଲାଉ "ଲଳିତା ସହସ୍ରନାମ ସ୍ତୋତ୍ର (ସଭାଷ୍ୟ)" ବହି ଉପରେ ଆଖି ପଡ଼ିଗଲା । ବହିଟି ମଗାଇ ଦେଖେ ଯେ ଏ ଲଳିତା କୃଷ୍ଣସଖୀ ଲଳିତା ନୁହନ୍ତି । ଏ ଲଳିତା ସାକ୍ଷାତ୍ "ଗୋବିନ୍ଦ-ରୂପିଣୀ" । ବହିରେ ଦିଆଯାଇଥିବା ଭାସ୍କର ରାୟଙ୍କ ଭାଷ୍ୟଟି ପଢ଼ିଲି । ପୂରା ବୁଝି ହେଲା ନାହିଁ । ମାନ୍ଦ୍ରାଜର ଥିଓସଫିକାଲ ସୋସାଇଟି ଦ୍ୱାରା ପ୍ରକାଶିତ ଲଳିତା ସହସ୍ରନାମର ଇଂରାଜୀ ଭାଷ୍ୟ ମଗାଇଲି । କିଛି କିଛି ବୁଝିହେଲା । ଈଶ୍ୱରଙ୍କ କୃପାରୁ ଲଳିତା ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ପଚିଶ ବର୍ଷ ପରେ ଏବେ ଅଭେଦତ୍ୱ ଦର୍ଶନ କରିପାରୁଛି । ଗୋପାଳ-ସହସ୍ରନାମ ପାଠର ଏହା ସୁଫଳ ବୋଲି ମନେକରୁଛି । କାରଣ, ସଂସ୍କାରହୀନ କୌଣସି ବ୍ୟକ୍ତି ଲଳିତା-ସହସ୍ରନାମ ପାଠ ପ୍ରତି ଆକୃଷ୍ଟ ହେବା ସମ୍ଭବ ନୁହେଁ । ଲଳିତା-ସହସ୍ରନାମ ସ୍ତୋତ୍ରର ଉତ୍ତର ଭାଗରେ ଏପରି କୁହାଯାଇଛି :—

ଯେନାନ୍ୟ ଦେବତା ନାମ କୀର୍ତ୍ତିତଂ ଜନ୍ମକୋଟିଷୁ ।
ତସ୍ୟୈବ ଭବତି ଶ୍ରଦ୍ଧା ଶ୍ରୀଦେବୀ ନାମକୀର୍ତ୍ତନେ ।
ଚରମେ ଜନ୍ମନି ଯଥା ଶ୍ରୀବିଦ୍ୟୋପାସକୋ ଭବେତ୍ ॥

"ଶ୍ରୀଜଗନ୍ନାଥ ଷୋଳକଳା" ବୋଲି ଓଡ଼ିଆ ବୈଷ୍ଣବମାନେ ବର୍ଣ୍ଣନା କରନ୍ତି । ଜଗନ୍ନାଥଙ୍କ ପରି ଜଗନ୍ନାଥା (ଲଳିତା) ମଧ୍ୟ ଷୋଳ କଳାବିଶିଷ୍ଟ ବୋଲି ଲଳିତାବିଦ୍ୟା ବା ଶ୍ରୀବିଦ୍ୟାକୁ "ଷୋଡ଼ଶୀ ବିଦ୍ୟା" କୁହାଯାଏ । ଏହା ଷୋଡ଼ଶ ଅକ୍ଷରାତ୍ମିକା । ଲଳିତା-ଉପାସକମାନେ ବ୍ୟବହାର କରୁଥିବା ଯନ୍ତ୍ରର ନାମ "ଶ୍ରୀଚକ୍ର" । ଶ୍ରୀଚକ୍ରରେ ପ୍ରଥମେ ବିନ୍ଦୁ (୧), ତାପରେ (୫ କଣ୍ଟିରେ) ୪୩ ତ୍ରିକୋଣ, ତାପରେ ଅଷ୍ଟଦଳ (୭) ତାପରେ ଷୋଡ଼ଶ ଦଳ (୮), ତାପରେ ଭୂପୁର (୯) । ଏହାକୁ ନବାବରଣ କୁହାଯାଏ । କୃଷ୍ଣଲୀଳାର ଅଷ୍ଟପାଟବଂଶୀ ଓ ଷୋଳ (ସହସ୍ର) ଗୋପନାରୀଙ୍କ ସହିତ ଶ୍ରୀଚକ୍ରରେ ଅଷ୍ଟଦଳ ଓ ଷୋଡ଼ଶ ଦଳର ସମନ୍ୱୟ କରାଯାଏ । ଶ୍ରୀଚକ୍ର ଭିତରେ ଦେବୀ ଭକ୍ତମାନେ ଗଣେଶ, ଗ୍ରହ-ନକ୍ଷତ୍ର, ଯୋଗିନୀ, ରାଶିଚକ୍ର, ୫୦ ବର୍ଣ୍ଣ ଓ ୫୦ ଦେବୀ-ପୀଠର ଅନ୍ତର୍ଭାବ ଦର୍ଶନ କରନ୍ତି ।

ଗଣେଶ-ଗ୍ରହ-ନକ୍ଷତ୍ର-ଯୋଗିନୀ-ରାଶିରୂପିଣୀମ୍ ।
ଦେବୀଂ ମନ୍ତ୍ରମୟୀଂ ନୌମି ମାତୃକା-ପୀଠ ରୂପିଣୀମ୍ ॥
( ନିତ୍ୟା ଷୋଡ଼ଶିକାର୍ଣ୍ଣବଃ, ୧।୧ )

ଭାରତର ପ୍ରାଚୀନ ବିଦ୍ୱାନ୍‌ମାନେ ମନେ କରୁଥିଲେ ଯେ ଶବ୍ଦବ୍ରହ୍ମଙ୍କ ଠାରୁ ବିଶ୍ୱର ଉତ୍ପତ୍ତି । ଅର୍ଥାତ୍ ବ୍ରହ୍ମ ହେଉଛନ୍ତି ଶବ୍ଦ, ବିଶ୍ୱ ହେଉଛି ଅର୍ଥ । ଶବ୍ଦ ଅକ୍ଷରାତ୍ମକ । ଅକ୍ଷର ଅର୍ଥ ଅକ୍ଷୟ । ଅକ୍ଷର ସଂଖ୍ୟା ୫୦ ଓ ଏହା ୮ ଭାଗରେ ବିଭକ୍ତ । ତନ୍ତ୍ରର ଅଷ୍ଟମାତୃକାମାନଙ୍କ ଗୀତାର ଅଷ୍ଟ ପ୍ରକୃତି ବସ୍ତୁତଃ ଆଠଭାଗାତ୍ମକ ବର୍ଣ୍ଣମାଳା । ୧- ଷୋଡ଼ଶ ସ୍ୱରବର୍ଣ୍ଣ, ୨- କ-ବର୍ଗ, ୩- ଚ-ବର୍ଗ ୪- ଟ-ବର୍ଗ, ୫- ତ-ବର୍ଗ, ୬- ପ-ବର୍ଗ, ୭- ଯରଲବ, ୮- ଶଷସହକ୍ଷ । ବର୍ଣ୍ଣ ମାଧ୍ୟମରେ ସୃଷ୍ଟି-ତତ୍ତ୍ୱ ବୁଝିବା ପଣ୍ଡିତଙ୍କ ପାଇଁ ସିନା ସହଜ, ଜନସାଧାରଣଙ୍କ ପାଇଁ ଏହା ନିଶ୍ଚିତ ଭାବରେ ଦୁର୍ବୋଧ । ଏଥିପାଇଁ ଭାରତରେ ୫୦ଟି ଦେବୀ-ପୀଠର କଳ୍ପନା କରାଯାଇଥିଲା—ପ୍ରତି ପୀଠ ଏକ ଏକ ଅକ୍ଷରାତ୍ମକ । ଉପରେ ଉଦ୍ଧୃତ ଶ୍ଳୋକରେ ଏହି ୫୦ ମାତୃକାପୀଠ ଲକ୍ଷିତ ।

ଲଳିତା-ସହସ୍ରନାମର ବୈଶିଷ୍ଟ୍ୟ ହେଉଛି ଯେ ଏହା ଅପୌରୁଷେୟ । ସମଗ୍ର ଶାକ୍ତ ସାହିତ୍ୟର ସାର କଥା ଏଥିରେ ଅଛି । ଯୋଗଶାସ୍ତ୍ରର ନିଗଢ଼ତମ

ଷଟ୍‌ଚକ୍ର ଓ କୁଣ୍ଡଳିନୀ ତତ୍ତ୍ୱ, ଦେବୀଙ୍କ ନାମ ମାଧ୍ୟମରେ ଏଥିରେ ବିବୃତ ହୋଇଛି । ବୈଷ୍ଣବ-ତନ୍ତ୍ରର କିଛି ଗୁହ୍ୟାତ୍ମକ ତତ୍ତ୍ୱ, ଯାହା ସାଧକକୁ ସର୍ବଦା ଲକ୍ଷ୍ମୀବନ୍ତ ଓ ଜନ୍ମମୁକ୍ତ ରଖିବା ପାଇଁ ଉଦ୍ଦିଷ୍ଟ, ତାହା ଏଥିରେ "ନିତ୍ୟାଷୋଡ଼ଶିକାରୂପା" ନାମରେ ଆଖ୍ୟାତ ।

ତତଃ ସ ଗୋପୀସଂଜ୍ଞାଭିର୍ବୃତୋଽଭୂତ୍ ସ୍ୱଶକ୍ତିଭିଃ ।
ତଦା ତେନ ବିନୋଦାୟ ସ୍ୱଂ ଷୋଡ଼ା କଳ୍ପିତଦ୍ ବପୁଃ ॥ ୮୫ ।
ତେଷାଂ ଷଣ୍ଣାଂଚ ଷଣ୍ଣାଃ ସମସ୍ତାଶ୍ଚିଷ୍ଟଦାୟକାଃ ।
ତୈର୍ଯନ୍ତ୍ର ପୂଜା ହବନ ଜପ ତର୍ପଣ ସେଚନୈଃ ।
ଭବନ୍ତି ଲକ୍ଷ୍ମୀକାନ୍ତଶ୍ରୀ ବିଜସ୍ଥାବେଗ୍ୟ ସଂମୁତାଃ ॥ ୮୬ ॥
(ତନ୍ତ୍ରରାଜତନ୍ତ୍ର, ୩୪ତମ ପଟଳ)

ଲଳିତା-ସହସ୍ରନାମରେ ପରମ ଜ୍ୟୋତି, ପରମ ଧାମ, ପରମ ରୂପ ଓ ପରମ ପୁରୁଷାର୍ଥ ବିଷୟରେ ଚେତନା ଦେବା ସହିତ ପରମାଣୁ-ଶକ୍ତି କଥା ବି ଅଛି, ଯଥା— "ପରଂଜ୍ୟୋତିଃ ପରଂଧାମ ପରମାଣୁଃ ପରାତ୍ପରା ।" ପାରମାଣବିକ ଶକ୍ତି ହିଁ ସର୍ବୋତ୍କୃଷ୍ଟ ଶକ୍ତି ବୋଲି ଆଧୁନିକ ବୈଜ୍ଞାନିକମାନେ ସ୍ୱୀକାର କରୁଛନ୍ତି । କିନ୍ତୁ, ଦେବୀ ଲଳିତାଙ୍କର ପ୍ରତି ନାମର "ରହସ୍ୟାର୍ଥ" ଅଛି; ଯାହା ଆଭିଧାନିକ ଅର୍ଥ ଠାରୁ ପୃଥକ୍ । ପରମାଣୁ ବୋଇଲେ କାରଣ-ବିନ୍ଦୁ । ବିନ୍ଦୁର ଅର୍ଥ ବୁଝାଇବାକୁ ଗଲେ ଗୋଟିଏ ସ୍ୱତନ୍ତ୍ର ବହି ହୋଇଯିବ ।

ଲଳିତା-ଉପାସନା ଅତି ପ୍ରାଚୀନ । ମହର୍ଷି ଅଗସ୍ତ୍ୟ ଓ ଋଷିକା ଦେବୀ ଲୋପାମୁଦ୍ରା ଲଳିତା-ଉପାସକ ଥିଲେ ବୋଲି ଲଳିତା-ସହସ୍ରନାମରେ ଅଛି । ସ୍ମୃତିକାର ହାରିତ ମହର୍ଷି, ଭଗବାନ୍ ପରଶୁରାମ, ଭଗବାନ୍ ଦତ୍ତାତ୍ରେୟ ଥିଲେ ଶ୍ରୀବିଦ୍ୟାଉପାସକ । ଆଚାର୍ଯ୍ୟ ଗୌଡ଼ପାଦ, ଗୋବିନ୍ଦ ଓ ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ଅଦ୍ୱୈତବାଦୀ ହେଲେ ହେଁ ଶ୍ରୀଯନ୍ତ୍ରରେ ଲଳିତା-ଉପାସନା କରୁଥିଲେ । ଗୌଡ଼ପାଦକୃତ ସୁଭଗୋଦୟ ଓ ଶଙ୍କରାଚାର୍ଯ୍ୟକୃତ "ସୌନ୍ଦର୍ଯ୍ୟ ଲହରୀ" ହେଉଛି ଲଳିତା-ଉପାସନା ବିଷୟରେ ପ୍ରାମାଣ୍ୟ ଗ୍ରନ୍ଥ । ଗଜପତି

ମହାରାଜା ପ୍ରତାପରୁଦ୍ର ଦେବଙ୍କ ସଭାପଣ୍ଡିତ ଲକ୍ଷ୍ମୀଧରଙ୍କ ବ୍ୟାଖ୍ୟା ହେଉଛି "ସୌନ୍ଦର୍ଯ୍ୟ ଲହରୀ"ର ଶ୍ରେଷ୍ଠ ସଂସ୍କୃତ ବ୍ୟାଖ୍ୟା । ବହୁ ପ୍ରାଚୀନ କାଳରୁ ଓଡ଼ିଆ ସାଧକମାନେ ଭିତରେ ଶାକ୍ତ (ଅନ୍ତଃଶାକ୍ତଃ), କିନ୍ତୁ ବାହାରକୁ ବୈଷ୍ଣବ ଭାବ ପ୍ରଦର୍ଶନ କରି ଆସୁଛନ୍ତି ଏହା ଆମର ପ୍ରାଚୀନ ପରଂପରା । ପୁରୀର 'ଦଇତା'ମାନେ, ଯେଉଁମାନେ କି ଶ୍ରୀଜଗନ୍ନାଥଙ୍କ ଜ୍ଞାତି ବୋଲି ଗର୍ବ କରନ୍ତି; ଘରେ ସେମାନେ ଦେବୀ ପୂଜା କରନ୍ତି । ଓଡ଼ିଶାରେ ଲଳିତା-ଉପାସନା ଜଗନ୍ନାଥଙ୍କ ଆବିର୍ଭାବ ପୂର୍ବରୁ ଥିଲା । ଶବରରାଜ ବିଶ୍ୱାବସୁ ନିଜ କନ୍ୟାର ନାମ ରଖିଥିଲେ "ଲଳିତା" । ଲଳିତା ପରମ ଗୋପନୀୟ ଦେବତା ନୀଳମାଧବଙ୍କୁ ସେବା କରୁଥିଲେ । ଏଥିପାଇଁ ବୋଧହୁଏ କୃଷ୍ଣ ସଖୀମାନଙ୍କ ମଧ୍ୟରେ ଲଳିତା ହେଉଛନ୍ତି ପ୍ରଥମା । କିନ୍ତୁ ଦାର୍ଶନିକ ଦୃଷ୍ଟିରୁ ଲଳିତା ହିଁ ଶ୍ରୀକୃଷ୍ଣ ।

ଲଳିତା-ସହସ୍ରନାମର ମାହାତ୍ମ୍ୟ ସହସ୍ରନାମ ପରେ ଅଛି । ବିଧିବେ ଭାବେ ଲଳିତା-ଉପାସନାରେ ପ୍ରବୃତ୍ତ ହେଲେ ଗୋଟିଏ ଜନ୍ମରେ ମୁକ୍ତି ମିଳେ; ଅର୍ଥାତ୍ ସାଧକ ନିଶ୍ଚିତ ଭାବେ ଜୀବନ୍ମୁକ୍ତ ହୁଅନ୍ତି । କିନ୍ତୁ ବହୁ ପାଠକଙ୍କ ପାଇଁ ମୁକ୍ତି ଅପେକ୍ଷା ଭୁକ୍ତି (ଭୋଗ) ଅଧିକ ପ୍ରିୟ । ଲଳିତା-ସହସ୍ରନାମ ପାଠକଲେ ଆୟୁ, ଆରୋଗ୍ୟ ଓ ଲକ୍ଷ୍ମୀ ଲାଭହୁଏ । କାନ୍ତି ବଢେ । ଶାନ୍ତି ମିଳେ । ଅବିବାହିତ ଝିଅମାନେ ଏହା ପାଠକଲେ ମନୋନୁକୂଳ ପତି ଲାଭହୁଏ (ଏପରି କ୍ଷେତ୍ରରେ, ପ୍ରତି ଶୁକ୍ରବାରେ ପଠନୀୟ) । କାନ୍ତି ଲାଭପାଇଁ ପୂର୍ଣ୍ଣିମା ରାତିରେ ପଠନୀୟ । ଲକ୍ଷ୍ମୀ-ଲାଭ ପାଇଁ ଦେବୀଙ୍କୁ ସର୍ବତିଥିମୟୀ ଚନ୍ଦ୍ରାକାର କାମେଶ୍ୱରୀ-କ୍ରମରେ ପ୍ରତିପଦାରୁ ଅମାବାସ୍ୟା/ପୂର୍ଣ୍ଣିମା ପର୍ଯ୍ୟନ୍ତ ଉପାସନା କରାଯାଏ । ନିତ୍ୟାମାନଙ୍କ ନାମ ଏହିପରି :—୧-କାମେଶ୍ୱରୀ, ୨-ଭଗମାଳିନୀ, ୩-ନିତ୍ୟକ୍ଲିନ୍ନା, ୪-ଭେରୁଣ୍ଡା, ୫-ବହ୍ନିବାସିନୀ, ୬-ମହାବିଦ୍ୟେଶ୍ୱରୀ, ୭-ଦୂତୀ, ୮-ତ୍ୱରିତା, ୯-କୁଳସୁନ୍ଦରୀ, ୧୦-ନିତ୍ୟା, ୧୧-ନୀଳପତାକା, ୧୨ ବିଜୟା, ୧୩-ସର୍ବମଙ୍ଗଳା, ୧୪-ଜ୍ୱାଳାମାଳିନୀ, ୧୫-ଚିତ୍ରା ଓ "ମହାତ୍ରିପୁରସୁନ୍ଦରୀ ଷୋଡଶୀ" ହେଉଛନ୍ତି ଅମୃତ କଳାରୂପିଣୀ ଷୋଳସଂଖ୍ୟକ । ଲଳିତା ସହସ୍ରନାମ କିନ୍ତୁ ରହସ୍ୟ ସହସ୍ରନାମ ।

ପାଠ ସକାଶେ ଅଧିକାରୀ ହେବାକୁ ହେବ । ଏହି ଅଧିକାର ପାଇଁ ଆଗ୍ରହୀ ବ୍ୟକ୍ତିଗଣ---Sri Sri Lalita Maha-Tripura-Sundari Temple, Sri Lalita Mahila Samajam, (P.O.) Tiru-Eengoi Malai, (S.O.) Manamedu, (TK) Musiri, (Dist) Tiruchy, Tamilnadu, Pin-621209 ଠିକଣାରେ ଦକ୍ଷିଣା ଆକାରରେ ମାତ୍ର ଏକଶହ ଟଙ୍କା ପଠାଇ ନିଜର ନାମ, ଗୋତ୍ର, ରାଶି ନକ୍ଷତ୍ର ଓ ଉଦ୍ଦେଶ୍ୟ ଲେଖି ଗୋଟିଏ ସର୍ବପୂର୍ତ୍ତିକଣ୍ଠ ପୂଜା କରାଇ ସେଠାରୁ ଆସିବା ଭସ୍ମ ଓ ସିନ୍ଦୂର ଧାରଣ କରି ସହସ୍ରନାମ ଭକ୍ତିର ସହ ପାଠ କଲେ ଫଳ ଅବଶ୍ୟ ମିଳିବ । ସାଧନାରେ ପ୍ରବୃତ୍ତ ହେବା ପୂର୍ବରୁ ଦୀକ୍ଷାନେଇ ପାରିଲେ ଆହୁରି ଉତ୍ତମ । କିନ୍ତୁ ସଦ୍‌ଗୁରୁ ମିଳିଲେ ତ ?

ଭାରତରେ ସବୁ ଜିନିଷର ଅଭାବ ଅଛି ଯିନା, ସଦ୍‌ଗୁରୁର ଅଭାବ ନ ଥିଲା କି ନୋହିବ । ପାଠକଙ୍କ ଘର ପାଖରେ ବି ସଦ୍‌ଗୁରୁ ଥାଇ ପାରନ୍ତି କିନ୍ତୁ ଗାଁ କନିଆଁ ସିଂଘାଣିନାକୀ ! ସଦ୍‌ଗୁରୁଙ୍କ ଠିକଣା ଦେବା ବି ବିପଜ୍ଜନକ । କାରଣ, ସଦ୍‌ଗୁରୁଙ୍କ ପାଖକୁ ଯିଏ ଯିବ, ସେ ତାଙ୍କୁ ଦୀକ୍ଷା ଦେବେ ବୋଲି କହିବ କିଏ ? ନ ଦେଇ ବି ପାରନ୍ତି । ପାଠକ ନିମ୍ନ ଠିକଣାରେ ଚେଷ୍ଟା କରିପାରନ୍ତି ।

ପଚିଶ ବର୍ଷ ହେଲା ସର୍ବାଙ୍ଗସୁନ୍ଦର ଲଳିତା-ସହସ୍ରନାମ ବହିଟି ଦେଖୁଛି । ଲଳିତା-ଉପାସନା ବିଷୟରେ ହଜାର ପୃଷ୍ଠାର ଗୋଟିଏ ବହି ଲେଖିବା ପାଇଁ ଉପାଦାନ-ସଂଗ୍ରହ କରିସାରିଛି; କିନ୍ତୁ ଗୋଟିଏ ଆଖିର କାଟାରାକ୍‌ଟ୍ ଅପରେସନ୍ ପରେ ଏବେ ଅନ୍ୟଟିର ଅବସ୍ଥା ଦ୍ରୁତ ଲକ୍ଷ୍ୟ ରହିଛି । ଭାବୁଛି, ଭୁଲ୍ କାଟରେ ଗ୍ରନ୍ଥଗଲି । ଗ୍ରନ୍ଥକାଟ ହେବାପାଇଁ କେଉଁ ଶାସ୍ତ୍ରରେ ହେଲେ ଉପଦେଶ ନାହିଁ । ଗ୍ରନ୍ଥ-ପାଠ ହିଁ ଆବଶ୍ୟକ । ପ୍ରିୟ ପାଠକ, ଭୁଲ୍‌ରେ ମଧ୍ୟ ଗ୍ରନ୍ଥକାଟ ନ ହୁଅନ୍ତୁ । ଆପଣ ଲଳିତାର୍ଚ୍ଚନା ଜାଣନ୍ତୁ ବା ନ ଜାଣନ୍ତୁ, ଶ୍ରୀବିଦ୍ୟା ଜପ କରନ୍ତୁ ବା ନ କରନ୍ତୁ; ଭଗବତୀ ଲଳିତାଙ୍କୁ ପ୍ରୀତ କରିବା ପାଇଁ ଲଳିତା-ସହସ୍ରନାମ ଯେତେବେଳେ ସମସ୍ତ ପାଇବେ, ସେତେବେଳେ ଦେବୀଙ୍କୁ ଧ୍ୟାନ କରି ସରଳ ହୃଦୟରେ ସଭକ୍ତି ପାଠ କରିଯାଆନ୍ତୁ; ଦେବୀଙ୍କ କୃପାରୁ ନିଃସନ୍ଦେହ ଆପଣଙ୍କର ସକଳ ମନୋରଥ ପୂର୍ଣ୍ଣହେବ । ଏହା ମୋ ଉପଦେଶ ନୁହେଁ । ଏହା ଲଳିତାସହସ୍ରନାମ ସ୍ତୋତ୍ରରେ ଅଛି—

ମାମର୍ଚ୍ଚୟନ୍ତୁ ବା ମା ବା ଵଦ୍ୟାଂ ଜପତୁ ବା ନ ବା ।
କୀର୍ତ୍ତୟେନ୍ନାମ ସାହସ୍ରଂ ଇଦଂ ମତ୍ପ୍ରୀତୟେ ସଦା ।
ମତ୍ପ୍ରୀତ୍ୟା ସକଲାନ୍ କାମାନ୍ ଲଭତେ ନାତ୍ର ସଂଶୟଃ ॥୪୭॥

ବିଶ୍ୱ ନାମରୂପାତ୍ମକ ଯେ ବିଶ୍ୱମ୍ଭର, ସେ ପୁଣି ଅନ୍ୟ ଦୃଷ୍ଟିରୁ ଦେଖିଲେ ବିଶ୍ୱାତୀତ । ବିଶ୍ୱାତୀତ ପରମେଶ୍ୱର ବା ପରମେଶ୍ୱରୀଙ୍କର ଦିବ୍ୟ ନାମ ଓ ଦିବ୍ୟ ରୂପ ଅଛି । ସେହି ରୂପର ଧ୍ୟାନ କଲେ ଓ ସେହି ନାମର ସ୍ମରଣ-ଉଚ୍ଚାରଣ କଲେ କଳିଦୋଷ-ନିବାରଣ ହୁଏ । ଆଧ୍ୟାତ୍ମିକ ଚିନ୍ତା ବିକଶିତ ହୁଏ । ଏହା ଭୁକ୍ତି ଓ ମୁକ୍ତିପ୍ରଦ ଏଥିପାଇଁ ଭଗବାନ୍ ଆଦି ଶଙ୍କରାଚାର୍ଯ୍ୟ ସହସ୍ରନାମ-ପାଠ ଓ ଶ୍ରୀପତିଙ୍କ ଧ୍ୟାନକୁ ଅବଶ୍ୟ କରଣୀୟ ବିଷୟ ମଧ୍ୟରେ ପ୍ରମୁଖ ସ୍ଥାନ ଦେଇଥିଲେ, ଯଥା—"ଗେୟଂ ଗୀତା ନାମ ସହସ୍ରମ୍, ଧ୍ୟେୟଂ ଶ୍ରୀପତେଃ ରୂପମଜସ୍ରମ୍ ।" ଗୋବିନ୍ଦ ଓ ଗୋବିନ୍ଦରୂପିଣୀ ଲଳିତା ଅଭିନ୍ନ । ସେ ଆପଣଙ୍କର କଲ୍ୟାଣ କରନ୍ତୁ ।

ଏଥିରେ ଦିଆଯାଇଥିବା ଧ୍ୟାନ, ନ୍ୟାସ ଓ ମୂଳ ଶ୍ଳୋକ [Text] ସମୂହ ପାଠପାଇଁ ସ୍ୱୟଂସଂପୂର୍ଣ୍ଣ । ଏହା ପୂର୍ଣ୍ଣାଭିଷିକ୍ତ ସାଧକ ମହାମେଧାନନ୍ଦନାଥ ବିଦ୍ୟାବାଚସ୍ପତି ପଣ୍ଡିତ ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକଙ୍କ ଦ୍ୱାରା ସଂକଳିତ ଓ ସମ୍ପାଦିତ ହୋଇଥିବାରୁ ସମ୍ପୂର୍ଣ୍ଣରୂପେ ଯେ ନିର୍ଭରଯୋଗ୍ୟ, ଏଥିରେ ସନ୍ଦେହ ନାହିଁ । ଓଡ଼ିଆରେ ଏହା ହେଉଚି ପ୍ରଥମ ସର୍ବାଙ୍ଗଶୁଦ୍ଧ ସଂସ୍କରଣ । ଶ୍ରୀଲଳିତା ପ୍ରସୀଦତୁ ॥

ଜ୍ୟୋତିର୍ବିଦ୍ୟା ବାଚସ୍ପତି

ଶୁଭ ଦୀପାବଳୀ
**ଶ୍ରୀ ରାମଚନ୍ଦ୍ର ହରିଚନ୍ଦନ**

ସ୍ନ ୧୯୯୪ ସାଲ
୯୬।୧୩୯୦, ବୁଦ୍ଧେଶ୍ୱରୀ କଲୋନୀ

ତା. ୨।୧୧।୧୯୮୬
ଭୁବନେଶ୍ୱର-୭୫୧୦୦୬



# ଶ୍ରୀତତ୍ତ୍ୱ
## ଓ
## ପୂର୍ଣ୍ଣାଭିଷିକ୍ତ ଶ୍ରୀ ସାଧକ ମହାମେଧାନନ୍ଦନାଥ

ବ୍ରହ୍ମାଣ୍ଡ ଏବଂ ପିଣ୍ଡର ରଚନାକ୍ରମ ସମାନ । ଯୋଗଶାସ୍ତ୍ର ବର୍ଣ୍ଣିତ ପିଣ୍ଡ ରଚନା ଜ୍ଞାନରେ ବ୍ରହ୍ମାଣ୍ଡ ରଚନାର ଧାରଣା ଆସେ । ସର୍ବକାରଣ-କାରଣଭୂତା ପରାଶକ୍ତି ଶ୍ରୀଦେବୀଙ୍କର ଅଧିଷ୍ଠାନ ବିଷୟରେ ଯୋଗଶାସ୍ତ୍ରର ବର୍ଣ୍ଣନା ନିମ୍ନକ୍ରମରେ ଆସେ । ଶିଖାଠାରୁ ପାଦାଙ୍ଗୁଳି ଅଗ୍ର ପର୍ଯ୍ୟନ୍ତ ସ୍ଥାନର ନାମ କ୍ଷେତ୍ର । ଏହି କ୍ଷେତ୍ର ମଧ୍ୟରେ ମସ୍ତିଷ୍କ ଗହ୍ୱରସ୍ଥ ସହସ୍ରାର ଚକ୍ରକ୍ଷେତ୍ର ସର୍ବ ପ୍ରଧାନ, ସର୍ବ ପ୍ରଥମ ଚକ୍ର । ଏହି କ୍ଷେତ୍ର ବା ଚକ୍ରରୁ ସହସ୍ରଧାରରେ ସ୍ନାୟୁସୂତ୍ରଗୁଡିକ ପ୍ରସାରିତ ହୋଇ ଶରୀରର ସର୍ବତ୍ର, ସର୍ବ ଇନ୍ଦ୍ରିୟ ସକଳ ଯନ୍ତ୍ରକୁ ସଜ୍ଜୀବିତ ରଖେ ଏବଂ ଯାବତୀୟ ଜ୍ଞାନ, କର୍ମ ସମ୍ପାଦନ କରାଏ । ଏହାକୁ ସପ୍ତ ବ୍ୟାହୃତିର ସତ୍ୟଲୋକ ବୋଲାଯାଏ । ଏହା ମୂଳ ପ୍ରକୃତିର ସ୍ଥାନ । ମୂଳ ପ୍ରକୃତି ତ୍ରିଗୁଣମୟୀ, ଧର୍ମରୂପିଣୀ, ବିଦ୍ୟା ବା ଜ୍ଞାନ ସ୍ୱରୂପିଣୀ । ତେଣୁ ଏ ଚକ୍ର ବିଶୁଦ୍ଧ ଧର୍ମକ୍ଷେତ୍ର, ଜ୍ଞାନଭୂମି, ବୁଦ୍ଧି, ଅହଂକାର, ଚିତ୍ତର କ୍ଷେତ୍ର ।

ତ୍ରିଗୁଣମୟୀ ମୂଳ ପ୍ରକୃତିରୁ ସତ୍ତ୍ୱରଜ ତମ ନାମକ ତିନିଗୁଣ ବିକଶିତ ହୋଇ ପରସ୍ପର ପୃଥକ୍ ହୁଏ । ତିନିଗୁଣ ପୃଥକ୍ ହେବା ପରେ ସମଷ୍ଟି ତ୍ରିଗୁଣ ତଥା ପୃଥଗ୍‌ଭୂତ ବ୍ୟଷ୍ଟି ତ୍ରିଗୁଣ ପୃଥକ୍ ପୃଥକ୍ ବିକଶିତ ହୁଅନ୍ତି । ତିନିଖିଅ ସୂତାକୁ ଯୋଡି, ଗୋଟିଏ ପ୍ରାନ୍ତ ଏକତ୍ର ବାନ୍ଧି ଅନ୍ୟ ପ୍ରାନ୍ତକୁ ସମାନ ଦୂରତାରେ ପୃଥକ୍ କରି ରଖିଲେ ସେହି ପୃଥକ୍‌ଭୂତ ପ୍ରାନ୍ତ ଯେପରି ଏକ ସମବାହୁ ତ୍ରିଭୁଜର ତିନୋଟି କୋଣରୂପେ ଦେଖାଯାଏ ଏବଂ ଉପରସ୍ଥ ଏକତ୍ର ବନ୍ଧା ହୋଇଥିବା ସୂତ୍ର-ପ୍ରାନ୍ତର ସଂଯୋଗସ୍ଥଳ ମଧ୍ୟ ଏକ କୋଣ ସୃଷ୍ଟି କରେ । ସେହିପରି ତ୍ରିଗୁଣମୟୀ ମୂଳ ପ୍ରକୃତିରୁ ତିନି ଗୁଣ ପରସ୍ପର ପୃଥକ୍ ହେଲେ ତିନି ଗୁଣର ପୃଥକ୍‌ଭୂତ ଧାରାର ତିନିମୁଖ ଗୋଟିଏ ସମବାହୁ

ତ୍ରିଭୁଜର ତିନୋଟି କୋଣ ପରି ତିନୋଟି ବିନ୍ଦୁରୂପେ ପ୍ରତୀୟମାନ ହୁଏ ଏବଂ ତିନି ଗୁଣର ତିନି ଧାରାର ସଂଯୋଗସ୍ଥଳ ମଧ୍ୟ ଗୋଟିଏ କୋଣ ବା ବିନ୍ଦୁ ପରି ପ୍ରକାଶ ପାଏ । ସେ ସ୍ୱରୋଟି କୋଣ ସଂଯୋଗରେ ଏକ ଘନ ତ୍ରିଭୁଜ ସୃଷ୍ଟି ହୁଏ, ଏହା ମୂଳ ତ୍ରିକୋଣ । ଏହା ବିନ୍ଦୁଂତ୍ ପରି ଉଜ୍ଜ୍ୱଳ । "ତ୍ରିକୋଣଂ ତସ୍ୟାନ୍ତଃ ସ୍ଫୁରତି ସତତଂ ବିଦ୍ୟୁଦାକାର ରୂପଂ" । ଏହାର ଗର୍ଭ ଶୂନ୍ୟମୟ, ଏହା ସହସ୍ରାର ଚକ୍ରର କେନ୍ଦ୍ରସ୍ଥଳ । ଏହାର କ୍ରିୟାଶକ୍ତିରେ ସହସ୍ରାର ଏବଂ ତଦଧୀନ ଶରୀରର ଯାବତୀୟ ଯନ୍ତ୍ର, ଚକ୍ର, କୋଷାଦି ଗଠିତ, ବର୍ଦ୍ଧିତ ଏବଂ ପୁଷ୍ଟ ହୁଏ । ଏହି ତ୍ରିକୋଣର ଶୂନ୍ୟଗର୍ଭେ ପରମାନନ୍ଦ ମୂଳ । ସେଠାରେ ଆକାଶରୂପୀ ପରମ ଶିବ ଅବସ୍ଥିତ, ସେ ସର୍ବାତ୍ମା, ପରମାତ୍ମା । (ପରମାତ୍ମା ଭଟ୍ଟେଦ୍ରତ୍ ଶୂନ୍ୟ) । ଏହି ଶୂନ୍ୟ ସ୍ଥାନକୁ ଶୈବଗଣ ଶିବଲୋକ, ବୈଷ୍ଣବଗଣ ପରମ ପୁରୁଷ ଧାମ । ଶାକ୍ତଗଣ ଶ୍ରୀଦେବୀ ଅଧିଷ୍ଠାନ କହନ୍ତି । ଏହାର ଚତୁଃ ପାର୍ଶ୍ୱରେ ବ୍ରହ୍ମାଙ୍କର ସତ୍ୟଲୋକ, ରୁଦ୍ରଙ୍କର ଶିବଲୋକ, ବିଷ୍ଣୁଙ୍କର ବୈକୁଣ୍ଠ ଏବଂ ଶ୍ରୀକୃଷ୍ଣଙ୍କର ଗୋଲୋକ ଅବସ୍ଥିତ ।

ଏହି ଶୂନ୍ୟଗର୍ଭ ମୂଳ ତ୍ରିକୋଣ ନାମକ ଘନ ତ୍ରିଭୁଜର ସ୍ୱରୋଟି କୋଣ ସ୍ୱରଟି ବିନ୍ଦୁରୂପେ ପ୍ରତ୍ୟକ୍ଷ ହୁଏ । ତହିଁରୁ ତିନି ଗୁଣର ସଂଯୋଗ ସ୍ଥଳସ୍ଥ ବିନ୍ଦୁର ନାମ ମୂଳ । ଉତ୍ତମ ପୁରୁଷ ତାର ଅଧିଦେବତା । ସତ୍ତ୍ୱଗୁଣର ବିନ୍ଦୁର ନାମ ଜ୍ୟେଷ୍ଠା, ବିଷ୍ଣୁ ତାହାର ଅଧିଦେବତା । ରଜୋଗୁଣର ବିନ୍ଦୁଟିର ନାମ ବାମା, ବ୍ରହ୍ମା ତାହାର ଅଧିଦେବତା । ତମୋ ଗୁଣର ବିନ୍ଦୁଟିର ନାମ ରୌଦ୍ରୀ, ମହେଶ୍ୱର ତାର ଅଧିଦେବତା । ଏହି ମୂଳ ତ୍ରିକୋଣ ନାମକ ଘନ ତ୍ରିଭୁଜଟି ସହସ୍ରାର ଚକ୍ରର କେନ୍ଦ୍ରକୁ ନିଜର କେନ୍ଦ୍ର କରି ଅବସ୍ଥିତ ହୁଏ । ଏହି ଶୂନ୍ୟଗର୍ଭ ମୂଳ ତ୍ରିକୋଣର ମଧ୍ୟସ୍ଥଳରେ ଅର୍ଥାତ୍ ଶୂନ୍ୟ ବା ଆକାଶରୂପୀ ପରମ ଶିବଙ୍କର ମଧ୍ୟଭାଗରେ ଗୋଟିଏ ଅତ୍ୟୁଜ୍ଜ୍ୱଳ ଅରୁଣବର୍ଣ୍ଣ ବିନ୍ଦୁ ପ୍ରତିଭାତ ହୁଏ । ସେହି ବିନ୍ଦୁର ନାମ ଶ୍ରୀ । ଏହି ବିନ୍ଦୁ ଶ୍ରୀଦେବୀଙ୍କର ପ୍ରତୀକ ବା ଅଧିଷ୍ଠାନ କ୍ଷେତ୍ର । ଏହା ପରମ ସଦାଶିବଙ୍କ କ୍ରୋଡସ୍ଥିତା ମହାଶକ୍ତି ଶ୍ରୀ, ପରମା, ଲଳିତା, ସର୍ବଜ୍ଞାନମୟୀ, ସର୍ବକାରଣମୟୀ, ସକଳ ସୌନ୍ଦର୍ଯ୍ୟମୟୀ । ପିଣ୍ଡ କ୍ଷେତ୍ର ପରି ବ୍ରହ୍ମାଣ୍ଡ କ୍ଷେତ୍ରରେ ମଧ୍ୟ ଏହି

ଶ୍ରୀ ଦେବୀ ବା ଲଳିତା ବା ପରାଶକ୍ତି ସର୍ବକାରଣ-କାରଣରୂପା ବିଭିନ୍ନ ରୂପରେ ସୃଷ୍ଟି ସ୍ଥିତି ସଂହାର କାରିଣୀ ।

ଏହି ମହାଶକ୍ତି ଅନନ୍ତ ରୂପା, ସର୍ବମୟୀ, ସର୍ବନାମ ରୂପମୟୀ ଏଣୁ ଏହାଙ୍କର ସହସ୍ର ନାମ ବର୍ଣ୍ଣନା କେବଳ ମନୁଷ୍ୟର ସୀମିତ ଦୃଷ୍ଟିର ପରିଚାୟକ । ଅନନ୍ତ ଅର୍ଥରେ ସହସ୍ର ଶବ୍ଦର ବ୍ୟବହାର ହୁଏ, ତେଣୁ ସହସ୍ର ନାମରେ ମଧ୍ୟ ଅନନ୍ତତା ଧାରଣାର ସମୀଚୀନ । ଲଳିତା ସହସ୍ର ନାମ ଓଡ଼ିଆଙ୍କ ନିକଟରେ ପ୍ରାୟ ନୂତନ କହିଲେ ଚଳେ । ସୌଭାଗ୍ୟବଶତଃ, ସେହି ପରାମ୍ବାର କୃପାରୁ ଆଜି ଏହା ଆମର ଜଣେ ବିଶିଷ୍ଟ ଶକ୍ତିସାଧକ ଶ୍ରୀ ମହା-ମେଧାନନ୍ଦ ନାଥଙ୍କ ଦ୍ୱାରା ସମ୍ପାଦିତ ହୋଇ ପ୍ରକାଶ ପାଉଛି । ଉପଯୁକ୍ତ ପଣ୍ଡିତ ସାଧକଙ୍କଦ୍ୱାରା ଏହା ପ୍ରକାଶ ପାଉଥିବାରୁ ଏହା ତାତ୍ତ୍ୱିକ-ଭ୍ରମ-ପ୍ରମାଦ-ଶୂନ୍ୟ ଓ ପ୍ରମାଣିକ ହେବା ସ୍ୱାଭାବିକ । ଶ୍ରୀଯୁକ୍ତ ମହାମେଧାନନ୍ଦନାଥ ଓଡ଼ିଶାର ସ୍ୱନାମଧନ୍ୟ ସାହିତ୍ୟିକ ଓ ସମାଲୋଚକ ତଥା ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗର ସମ୍ପାଦକ ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ । ଏ ମହାଶୟ ଏକାଧାରରେ ବହୁଭାଷାଭିଜ୍ଞ ହେଲେ ହେଁ ବିଶେଷତଃ ସଂସ୍କୃତ ବେଦ ବେଦାନ୍ତ ସାହିତ୍ୟ, ଅଳଙ୍କାର,ବ୍ୟାକରଣ,ଜ୍ୟୋତିଷ, କର୍ମକାଣ୍ଡ, ଆୟୁର୍ବେଦାଦି ବିଦ୍ୟାରେ ଜଣେ ସଂଶୟ ଛେତ୍ତା ପଣ୍ଡିତ । ଏହା ଦିବ୍ୟ କୃପାବିନା ସାଧାରଣ ମନୁଷ୍ୟପକ୍ଷରେ ଅସମ୍ଭବ । ତାମିଲନାଡୁ ପ୍ରଦେଶ ଅନ୍ତର୍ଗତ ତିରୁଚିରା ପଲ୍ଲୀ ନିକଟବର୍ତ୍ତୀ ଗୁହ୍ୟାପୀଠର ସର୍ବସମର୍ଥ ଆଚାର୍ଯ୍ୟ ପ୍ରବର ଶ୍ରୀ ଶ୍ରୀ ଅଦ୍ୱୟାନନ୍ଦ-ଙ୍କର କରୁଣାରୁ ସେ କୃପାପ୍ରାପ୍ତ ; ଗୁରୁଦେବ ନାମ ପ୍ରଦାନ କଲେ—ମହାମେଧା-ନନ୍ଦନାଥ । ଉପଯୁକ୍ତ ପାତ୍ରର ଉପଯୁକ୍ତ ନାମ । ସପ୍ତଶତୀରେ କୁହଯାଇଛି—'ମେଧାସି ଦେବି ବିଦିତାଖିଲଶାସ୍ତ୍ରସାରା' ଓ 'ମହାମେଧା ମହାସ୍ମୃତିଃ । ମେଧସ ବା ମେଧା ଋଷିଙ୍କ ପରି ଜ୍ଞାନ ନଥିଲେ ସର୍ବଜ୍ଞ ଗୁରୁ ଏପରି ନାମକରଣ କରି ନଥାଆନ୍ତେ । ଏ ମହାଶୟ ଶାକ୍ତସମ୍ପ୍ରଦାୟରେ ପୂର୍ଣ୍ଣାଭିଷିକ୍ତ ସାଧକ । ଆଗମ ଶାସ୍ତ୍ରର କ୍ରମଦୀକ୍ଷାରେ ଏହା ଚୂଡ଼ାନ୍ତ ଦୀକ୍ଷା । ଶିଷ୍ୟର ଦକ୍ଷତାରେ ଆଚାର୍ଯ୍ୟଙ୍କର ପୂର୍ଣ୍ଣସନ୍ତୋଷ ଓ ବିଶ୍ୱାସ ଆସିଲେ ପୂର୍ଣ୍ଣାଭିଷେକ ସୌଭାଗ୍ୟ ଲଭହୁଏ । ଆଗମ ଶାସ୍ତ୍ରରେ ପୂର୍ଣ୍ଣାଭିଷିକ୍ତଙ୍କର ବୈଶିଷ୍ଟ୍ୟ ବର୍ଣ୍ଣନା କରି କୁହାଯାଇଛି—

ସ ବନ୍ଦ୍ୟଃ ସ ଗୁରୁଃ ସୋଽର୍ଚ୍ଚ୍ୟଃ ସ ଦୈବଜ୍ଞଃ ସ ମାନ୍ତ୍ରିକଃ ।
ସ ସେବ୍ୟଃ ସ ଚ ସଂସ୍ତୁତ୍ୟଃ ସ ଦ୍ରଷ୍ଟବ୍ୟଃ ସ ସାତ୍ତ୍ୱିକଃ ॥
ସ ବ୍ରତୀ ସ ତପସ୍ୱୀ ଚ ସୋଽନୁଷ୍ଠାତା ସ ପୂଜକଃ ।
ସ ବେଦାଗମଶାସ୍ତ୍ରାଢ଼୍ୟ ସର୍ବବିଦ୍ୟାବିଶାରଦଃ ॥
ତତ୍ କୁଳଂ ପାବନଂ ଦେବି ଧନ୍ୟା ତଜ୍ଜନନୀ ସ୍ମୃତା ।
ତତ୍ପିତା ଚ କୃତାର୍ଥଃ ସ୍ୟାତ୍ ମୁକ୍ତାସ୍ତତ୍ ପିତରଃ ପ୍ରିୟେ ।
ପୁଣ୍ୟା ସ୍ତଦ୍ ବଂଶଜାଃ ସର୍ବେ ପୂତାସ୍ତନ୍‌ମିତ୍ରବାନ୍ଧବାଃ ॥
ପୂର୍ଣ୍ଣାଭିଷେକ ଯୁକ୍ତସ୍ୟ ଦର୍ଶନଂ ବନ୍ଦନଂ ତଥା ।
ସମ୍ଭାଷଣଂ ଚ କୁର୍ବୁତେ ରାଜସୂୟ ଫଳଂ ଲଭେତ୍ ॥
ନାନା ଜନ୍ମାର୍ଜ୍ଜିତାସ୍ତୈର ପୁଣ୍ୟ କର୍ମ ଫଳୋଦୟାତ୍ ।
ପୂର୍ଣ୍ଣାଭିଷେକ ସଂଯୁକ୍ତଃ ଜୀବନ୍ମୁକ୍ତୋ ନ ସଂଶୟଃ ॥

(ରାଜସ୍ଥାନପ୍ରାଚ୍ୟବିଦ୍ୟା ପ୍ରକାଶନ, ଆଗମରହସ୍ୟ ପୃ ୧୦୪—୫)

ଏହି ପୂର୍ଣ୍ଣାଭିଷିକ୍ତ ପଣ୍ଡିତ ପ୍ରବର ଶ୍ରୀ ମହାମେଧାନନ୍ଦନାଥ [ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ]ଙ୍କ ସାଧନା ଓ କୃତିତ୍ୱ ବିଷୟରେ ଭାରତର ସର୍ବଶ୍ରେଷ୍ଠ ଶାକ୍ତ ସମାଜ ସଂସ୍ଥା [ଏଲାହାବାଦ ଅଲୋପୀବାଗ ମାର୍ଗ ]ର ମୁଖପତ୍ର 'ଚଣ୍ଡୀ'ର [ବର୍ଷ ୪୫, ସଂଖ୍ୟା ୭—୮ ।] ସମ୍ପାଦକୀୟ ପ୍ରଶଂସା ମୁଖର । ମହାଶୟଙ୍କର ସାହିତ୍ୟ ସହ ତନ୍ତ୍ର ଜ୍ୟୋତିଷାଦି ବିଷୟକ ବିଭିନ୍ନ ଲେଖାମାନ ବିଭିନ୍ନ ପତ୍ର ପତ୍ରିକାରେ ଭିନ୍ନ ଭିନ୍ନ ସମୟରେ ପ୍ରକାଶ ଲାଭ କରି ସମସ୍ତ ଜିଜ୍ଞାସୁମାନଙ୍କର ବହୁ ସନ୍ଦେହ ଦୂର କରିଥାଏ । ମୋର ମଧ୍ୟ ଯେତେବେଳେ ଶାସ୍ତ୍ରୀୟ ସନ୍ଦେହ ହୁଏ ମୁଁ ତାଙ୍କୁ ପଚାରେ । ଓଡ଼ିଶାରେ ଆଦିଶଙ୍କରଙ୍କ ପ୍ରଥମ ପୀଠ ଗୋବର୍ଦ୍ଧନ ମଠ ଥିଲେ ମଧ୍ୟ ଶଙ୍କରଙ୍କର ସାଧନାର ସିଦ୍ଧିଦାତ୍ରୀ-ଦେବୀ ଷୋଡ଼ଶୀ ସୁନ୍ଦରୀଙ୍କର ଆରାଧନା ଏଠାରେ ଲୁପ୍ତପ୍ରାୟ । ତାହାର ପୁନରୁଦ୍ଧାର କଲେ ମହାଶୟଙ୍କର ଏତାଦୃଶ ଶୁଭ ମନୋଭାବର ଉତ୍ତରୋତ୍ତର ଉନ୍ନତି ପାଇଁ ଜଗନ୍ମାତା ପରାମ୍ବା ଲଳିତା ମହାଦେବୀଙ୍କର ଚରଣରେ ଏକାନ୍ତ ପ୍ରାର୍ଥନା । ଇତି

ଗୁଣମୁଗ୍ଧ,

କବିରାଜ **ବାମଦେବ ଆଚାର୍ଯ୍ୟ** ଆୟୁର୍ବେଦାଚାର୍ଯ୍ୟ
ଆୟୁର୍ବେଦ ପରିଦର୍ଶକ ଏବଂ ଫାର୍ମାସୀ ସୁପରିଣ୍ଟେଣ୍ଡେଣ୍ଟ
ଚନ୍ଦ୍ରାମଣୀଶ୍ୱର, ଭୁବନେଶ୍ୱର [ ତା ୫ । ୨ । ୮୭ ]

# ଶ୍ରୀମନ୍ଦିର

## ଶ୍ରୀଦେବୀ, ଶ୍ରୀବିଦ୍ୟା, ଶ୍ରୀଚକ୍ର

## ଓ

# ଶ୍ରୀ (ଲଳିତା) ସହସ୍ରନାମ

'ଶ୍ରୀ ମନ୍ଦିର' ମାନେ ଆମେ ସବୁ ଓଡ଼ିଆ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ବଡ଼ଦେଉଳ ଏବଂ 'ଶ୍ରୀଚକ୍ର' କହିଲେ ପତିତପାବନବାନା ଉଡ଼ୁଥିବା ନଭସ୍ପର୍ଶୀ 'ନୀଳଚକ୍ର'କୁ ବୁଝିଥାଉଁ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଆଷାଢ଼ଶୁକ୍ଳ ଦ୍ୱିତୀୟାରେ ରଥଯାତ୍ରା କରି ଗୁଣ୍ଡିଚାମଣ୍ଡପରେ ନବଦିନ ଅବସ୍ଥାନ କାଳରେ ସେମାନଙ୍କ ଅନୁପସ୍ଥିତିରେ ମଧ୍ୟ ବଡଦେଉଳ ହିଁ ଶ୍ରୀମନ୍ଦିର ସିନା ଗୁଣ୍ଡିଚା ମଣ୍ଡପକୁ ଶ୍ରୀମନ୍ଦିର କୁହାଯାଏ ନାହିଁ । କାରଣ ଶ୍ରୀ ବା ମହାଲକ୍ଷ୍ମୀଙ୍କୁ ନ ନେଇ ଜଗନ୍ନାଥ ରଥଯାତ୍ରା କରନ୍ତି, ସାଧାରଣ ଲୋକଙ୍କ ଘରକୁ ଓହ୍ଲାଇ ଯାଆନ୍ତି, ସାଧାରଣ ଦଇତାଙ୍କ ନୈବେଦ୍ୟ ଗ୍ରହଣ କରନ୍ତି ଏବଂ ଫେରିଲା ପରେ ସାଧାରଣ ଲୋକଙ୍କ ମର 'କବାଟକିଳା' ବା ଶ୍ରୀମନ୍ଦିରକୁ ପ୍ରବେଶ ନିଷେଧ ଦ୍ୱାରା ଲୋକ-ହସା ହୁଅନ୍ତି । ତେଣୁ ଶ୍ରୀ ବା ମହାଲକ୍ଷ୍ମୀଙ୍କ ଯେଉଁ ବଡ଼ଦେଉଳ ଶ୍ରୀମନ୍ଦିର । ଉଦ୍ୟମକର୍ମୀ ପୁଣ୍ୟଶୀଳ ସୁକୃତୀମାନଙ୍କ ଭବନରେ ସେ ହିଁ ଲକ୍ଷ୍ମୀ । ସେ ଥିଲେ ହିଁ ସବୁ 'ଶ୍ରୀମନ୍ତ'—

'ଯା ଶ୍ରୀଃ ସ୍ୱୟଂ ସୁକୃତିନାଂ ଭବନେଷୁ' (ଚଣ୍ଡୀ ୪।୫)

ଶ୍ରୀ ହିଁ ଶୋଭା, ଶ୍ରୀ ହିଁ କ୍ଷମତା, ଶ୍ରୀ ହିଁ ଐଶ୍ୱର୍ଯ୍ୟ, ସବୁର ମୂଳରେ ସେ ହିଁ ଆଦ୍ୟ ପ୍ରକୃତି(ପ୍ରକୃତିସ୍ତ୍ୱଂ ଚ ସର୍ବସ୍ୟ-ଚଣ୍ଡୀ ୧।୭୮, ପରମା ପ୍ରକୃତିସ୍ତ୍ୱମାଦ୍ୟା -ଚଣ୍ଡୀ ୪।୭), ସକଳ ଜଗତର ଆଶ୍ରୟ ରୂପା (ସର୍ବାଶ୍ରୟାଖିଲମିଦଂ ଜଗଦ୍— ଚଣ୍ଡୀ ୪।୭), ନିଖିଳଜଗତର ଆଧାରଭୂତା (ଆଧାରଭୂତାଜଗତସ୍ତ୍ୱମେକା

ଚଣ୍ଡୀ ୧୧/୪),ଶ୍ରୀ ହିଁ 'ଧନ ପ୍ରାଚୁର୍ଯ୍ୟ ଶୋଭା ବୃଦ୍ଧି,ତାର ପ୍ରୀତିରେ ସର୍ବସିଦ୍ଧି'। ଆହୁନ୍ତୁ ସମସ୍ତେ ସେହି ମା'ଙ୍କର ପୂଜା କରିବା, ଶ୍ରୀମନ୍ତ ହେବା ।

## ଶ୍ରୀ (ଦେବୀ) ମନ୍ଦିର :

ଅମୃତର ସାଗର, ତା ମଧ୍ୟରେ ଏକ ରତ୍ନଦ୍ୱୀପ । ସେଥିରେ ନାନା ବୃକ୍ଷ [କଳ୍ପତରୁ-ସନ୍ତାନ-ହରିଚନ୍ଦନ-ମନ୍ଦାର-ପାରିଜାତ ଏହି ପଞ୍ଚ ଦେବତରୁ] ଶୋଭିତ ଏକ ଦିବ୍ୟ ଉଦ୍ୟାନ, ଉଦ୍ୟାନର ଚାରିପାଖରେ ପୁଷ୍ପରାଗ, ପଦ୍ମରାଗ, ଗୋମେଦ, ବଜ୍ର, ବୈଦୂର୍ଯ୍ୟ, ଇନ୍ଦ୍ରନୀଳ, ମୁକ୍ତା,ମରକତ, ବିଦ୍ରୁମ ଓ ମାଣିକ୍ୟର ଭବ୍ୟ ବିଶାଳ ନବରତ୍ନପ୍ରାକାର । ତା' ଭିତରେ ଅଛି ଏକ ସହସ୍ର ସ୍ତମ୍ଭ ବିଶିଷ୍ଟ ମାଣିକ୍ୟ ମଣ୍ଡପ ଓ ତିନୋଟି ବାପୀ-ଅମୃତବାପୀ,ଆନନ୍ଦବାପୀ ଓ ବିମର୍ଶବାପୀ । ଉଦ୍ୟାନ ଉପରେ ଦିନର ସବୁ ସମୟରେ ପ୍ରଭାତକାଳୀନ ସ୍ୱଚ୍ଛ, ଶୁଭ୍ର ଅରୁଣ କିରଣ ଏବଂ ରାତିରେ ଶାନ୍ତଶୀତଳ ଜ୍ୟୋସ୍ନା ଝରିତେ ହେଉଥାଏ । ସେହି ଉଦ୍ୟାନ ଭିତରେ ବର୍ତ୍ତମାନ ଏକ ଉତ୍ତମ 'ଚିନ୍ତାମଣିଗୃହ' । ତା'ର ଦ୍ୱାରରେ ଏକ ସୁନ୍ଦର ସୁଦୃଢ଼ ଅର୍ଗଳ । ଚିନ୍ତାମଣି ଗୃହର ଚାରିଦ୍ୱାର—ପୂର୍ବ, ଦକ୍ଷିଣ, ପଶ୍ଚିମ ଓ ଉତ୍ତର—ଯଥାକ୍ରମେ—ପୂର୍ବାମ୍ନାୟ, ଦକ୍ଷିଣାମ୍ନାୟ, ପଶ୍ଚିମାମ୍ନାୟ ଓ ଉତ୍ତର ଆମ୍ନାୟ । ଚିନ୍ତାମଣି ଗୃହର ମଧ୍ୟ ସ୍ଥଳରେ ବିଦ୍ୟମାନ ମଣିମୟ ପ୍ରଦୀପ-ବଳୟ ବେଷ୍ଟିତ ମଣିର ସିଂହାସନ । ସେହି ସିଂହାସନର ଚାରିପାଦ—ବ୍ରହ୍ମା, ବିଷ୍ଣୁ, ଶିବ ଓ ରୁଦ୍ର । ତା'ର ଫଳକପଟା-ସଦାଶିବ । •ସିଂହାସନ ଉପରେ ହଂସ ପକ୍ଷର କୋମଳ ଲୋମର ଶେଯ ଓ ତକିଆ ଏବଂ କୁସୁମଫୁଲ ରଙ୍ଗର ବିଛଣା ଚାଦର [କୌସୁମ୍ଭ-ଆସ୍ତରଣ] । ଉପରେ ଦିବ୍ୟ ଚାନ୍ଦୁଆ, ଚାରିଆଡେ ମନୋରମ ପରଦା । ଏହା ହିଁ ଶ୍ରୀପୁର, ଶ୍ରୀନଗର ବା ଶ୍ରୀଦେବୀଙ୍କର ମନ୍ଦିର । ଏହାର ହିଁ ସୁନ୍ଦର ବର୍ଣ୍ଣନା କରି ସୌନ୍ଦର୍ଯ୍ୟ ଲହରୀରେ ଆଚାର୍ଯ୍ୟ ଶଙ୍କର କହିଛନ୍ତି—

ସୁଧାସିନ୍ଧୋର୍ମଧ୍ୟେ ସୁରବିଟପିବାଟୀ ପରିବୃତେ
ମଣିଦ୍ୱୀପେ ନୀପୋପବନବତି ଚିନ୍ତାମଣିଗୃହେ ।
ଶିବାକାରେ ମଞ୍ଚେ ପରମଶିବ ପର୍ଯ୍ୟଙ୍କ ନିଲୟାଂ
ଭଜନ୍ତି ତ୍ୱାଂ ଧନ୍ୟାଃ କତିଚନ ଚିଦାନନ୍ଦ ଲହରୀ ॥

ଶ୍ରୀଯନ୍ତ୍ରର ବିସ୍ତୃତ ବର୍ଣ୍ଣନା 'ଦୁର୍ବାସାତ୍ରିପୁରମହିମ୍ନ'ରେ ଦେଖିବାକୁ ମିଳେ । ଶ୍ରୀନଗର (କାଶ୍ମୀର)ର ନାମକରଣ ମୂଳରେ ମଧ୍ଯ ଶ୍ରୀଦେବୀଙ୍କ ଐତିହ୍ୟ ବିଦ୍ୟମାନ । କାଶ୍ମୀରରୁ ପ୍ରକାଶିତ ତନ୍ତ୍ରଗ୍ରନ୍ଥମାନଙ୍କରୁ ଶ୍ରୀବିଦ୍ୟା ସମ୍ବନ୍ଧରେ ଅନେକ ବିସ୍ତୃତ ବିବରଣୀ ମିଳେ । 'ଶ୍ରୀ ବିଦ୍ୟାର୍ଣ୍ଣବ ତନ୍ତ୍ର' ମଧ୍ଯ ଜମ୍ମୁ ଓ କାଶ୍ମୀର ମହାରାଜା ଶ୍ରୀ ହରିସିଂହଜୀ ବାହାଦୂରଙ୍କ କର୍ତ୍ତୃକ ଖ୍ରୀ:୧୯୩୦ରେ ପ୍ରକାଶ ପାଇଥିଲା । ସମସ୍ତେ ଆସନ୍ତୁ ସେହି ଅମୃତ ସାଗରର ସନ୍ଧାନ କରିବା, ସବୁ ଘରକୁ ମନ୍ଦିର କରିବା, ସମସ୍ତେ ଶ୍ରୀମନ୍ତ ହେବା ।

## ଶ୍ରୀଦେବୀ (ଷୋଡ଼ଶୀ, ମହାତ୍ରିପୁରସୁନ୍ଦରୀ) :

ଆଦ୍ୟ ଶଙ୍କର ଭଗବତ୍ପାଦ ସମଗ୍ର ଭାରତ ପର୍ଯ୍ୟଟନ କଲାବେଳେ ପହଞ୍ଚିଲେ କାଞ୍ଚୀ ବା ଶଙ୍କର କାଞ୍ଚୀପୁରମ୍ରେ । ସନ୍ନ୍ୟାସୀ ଶଙ୍କର ସ୍ଥିରକଲେ ରାତିରେ ରହିବା ପାଇଁ ଗ୍ରାମ ବାହାରେ ଥିବା ଏକ ଅର୍ଦ୍ଧଭଗ୍ନ ଦେବୀ ମନ୍ଦିରରେ । ସେଠାରେ କିନ୍ତୁ ଯିଏ ରହେ, ତାକୁ ଦେବୀ ଖାଇଯାଏ ଓ ସେ ସକାଳେ ମରି ପଡ଼ିଥାଏ ବୋଲି ଲୋକେ ବାରଣ କଲେ । ସନ୍ନ୍ୟାସୀ କିନ୍ତୁ ଗ୍ରାମରେ ରହିବେ ନାହିଁ । ପୁଣି ଦେବୀ-ମା, ସେ ବା କାହିଁକି କାହାକୁ ଖାଇଯିବ, ସ୍ନେହମୟୀ ଜନନୀ କେବେ କଣ ନିଜ ସନ୍ତାନକୁ ଖାଇପାରେ ? ଆଦ୍ୟ ଶଙ୍କର ତେଣୁ ରହିଲେ ରାତିରେ ଗ୍ରାମୋପାନ୍ତର ସେହି ମନ୍ଦିରରେ ।

ଅର୍ଦ୍ଧରାତିରେ ହଠାତ୍ ମନ୍ଦିର ଦିବ୍ୟ ଆଲୋକରେ ଉଦ୍ଭାସିତ ହୋଇ ଉଠିଲା । ଆଦ୍ୟ ଶଙ୍କର ଦେଖିଲେ ତାଙ୍କ ଆଗରେ ପାଶାଙ୍କୁଶ-ଇକ୍ଷୁବାଣଧରା ଷୋଡ଼ଶୀ ଅନିନ୍ଦ୍ୟ ସୁନ୍ଦରୀ ମହାତ୍ରିପୁରସୁନ୍ଦରୀ । ସୁନ୍ଦରୀଙ୍କ ରୂପର ବର୍ଣ୍ଣନାରେ ନିର୍ଗତ ହେଲା 'ସୌନ୍ଦର୍ଯ୍ୟ ଲହରୀ' । ସବୁ ଶ୍ଳୋକ ବୀଜାକ୍ଷର ପୁଟିତ ମନ୍ତ୍ର ଓ ଦିବ୍ୟଦର୍ଶନୋଦ୍ଭୂତ । ସୌନ୍ଦର୍ଯ୍ୟ ଲହରୀ କବିତ୍ୱ ଦୃଷ୍ଟିରୁ ଯେପରି ଅଲୌକ ସାମାନ୍ୟ, ତାନ୍ତ୍ରିକ ଗ୍ରନ୍ଥଭାବରେ ସେପରି ଅସାମାନ୍ୟ । ଜୀବନରେ ଯଦି ଜଣେ କେବଳ ସୌନ୍ଦର୍ଯ୍ୟ ଲହରୀ ପଢ଼େ ତେବେ ସେ ଅସାମାନ୍ୟ କବିତ୍ୱ ଓ ପାଣ୍ଡିତ୍ୟର ଅଧିକାରୀ ହେବା ସଙ୍ଗେ ସଙ୍ଗେ ଦିବ୍ୟଭାବରେ ସଚ୍ଚିଦାନନ୍ଦ ଚେତନାରେ ବିଚରଣ କରି ଋଦ୍ଧି ଓ ସିଦ୍ଧି ଲାଭ କରିପାରିବ ।

ଭଗବତ୍‌ପାଦ ଶଙ୍କରଙ୍କ ସୌନ୍ଦର୍ଯ୍ୟ ଲହରୀ ସ୍ତବ ଶୁଣି ଦେବୀ ପ୍ରୀତ ହେଲେ । ବର ଯାଚଲେ । ଆଚାର୍ଯ୍ୟ ପଚାରିଲେ—'ମା' ମତେ ପ୍ରଥମେ କୁହ—ତୁମେ ତୁମ ସନ୍ତାନକୁ ଖାଇଯାଅ ବୋଲି ଲୋକରେ ଏ ବଦ୍‌ନାମ କାହିଁକି ? ଦେବୀ କହିଲେ—'ଏ ପୀଠରେ ପ୍ରତିଷ୍ଠାପିତ ମୋର ଯନ୍ତ୍ରମୂର୍ତ୍ତି ସ୍ଖଳିତ । ମୁଁ ଚାହେଁ ଏହାର ପୁନଃ ପ୍ରତିଷ୍ଠା । ଏତକ କହିବା ପାଇଁ ମୁଁ ଯେଉଁ ସାଧକ ପାଖରେ ଠିଆ ହୋଇଛି, ସେ ମତେ ଦେଖି ଆତ୍ମହରା ହୋଇଛି । ତୁମେ ସେହି ଯନ୍ତ୍ରର ପୁନଃ ପ୍ରତିଷ୍ଠା କର ।

ଆଚାର୍ଯ୍ୟ ଶଙ୍କର ତା'ପରେ ଯେଉଁ ଯନ୍ତ୍ର ଭୂ-ପ୍ରସ୍ତରେ ଉତ୍‌କୀର୍ଣ୍ଣ କରି ଯାଇଛନ୍ତି, ଆଜି ମଧ୍ୟ କାଞ୍ଚୀ କାମାକ୍ଷୀଙ୍କ ଆଗରେ ସେହି ଶକ୍ତିବଳୟିତ ଶ୍ରୀଚକ୍ର-ରାଜ ପୂଜା ପାଉଛନ୍ତି ଏବଂ କାଞ୍ଚୀ ଶାକ୍ତ ପରମ୍ପରାର ଦିବ୍ୟ ଜ୍ୟୋତିରେ ଉଦ୍ଭାସିତ ହୋଇ ପଞ୍ଚମପୀଠର ପ୍ରତିଷ୍ଠା ଲାଭ କରିଆସୁଛି ।

କାମରୂପର କାମାକ୍ଷା, କାଞ୍ଚୀର କାମାକ୍ଷୀ, ମଦୁରାଇର ମୀନାକ୍ଷୀ, ଶ୍ରୀରଙ୍ଗମ୍‌ର ଅଖିଳାଣ୍ଡେଶ୍ୱରୀ କେବଳ କାହିଁକି କାଶୀର ଅନ୍ନପୂର୍ଣ୍ଣା, ପୁରୁଷୋତ୍ତମ ପୁରୀର ମହାଲକ୍ଷ୍ମୀ ଓ ବିମଳା, ଭୁବନେଶ୍ୱରର ଭୁବନେଶ୍ୱରୀ ଓ ପାର୍ବତୀ—ସବୁ ସେହି ପରାଶକ୍ତି ଅଖିଳ ସୌନ୍ଦର୍ଯ୍ୟର ଆକର ସୁନ୍ଦରୀ, ନିଖିଳ ଲାଳିତ୍ୟର ମୂର୍ତ୍ତି ଲଳିତା ବା ଶ୍ରୀଦେବୀଙ୍କର ପ୍ରକାଶ ପରମ୍ପରାର ଭୂତିବିଶେଷ । ପାଶାଙ୍କୁଶ-ଧାରୀ ଯେତେ ଦେବୀ ସବୁ ଶ୍ରୀକୁଳର ଶ୍ରୀଦେବୀ ।

ବିଷ୍ଣୁଙ୍କର ଦଶ ଅବତାର ପରି ଦେବୀଙ୍କର ମଧ୍ୟ ଦଶରୂପ । ଦିନେ ଦେବଦେବ ମହାଦେବ ପାର୍ବତୀ ଉମାଙ୍କୁ କୌତୁକରେ 'କାଳୀ' ବୋଲି କହି ଦେବାରୁ ଦେବୀ ଅଭିମାନବଶତଃ କ୍ରୁଦ୍ଧା ହୋଇ ଅନ୍ତର୍ହିତା ହୋଇଗଲେ । ତାଙ୍କୁ ଖୋଜିବାକୁ ଯାଇ ଶିବ ଯେଉଁ ଦିଗକୁ ଗଲେ ସେଠାରେ ଦେଖିଲେ କମ୍ବୁକମାକାର ଅଦ୍ଭୁତ ଶକ୍ତିର ପ୍ରକାଶ । ଦଶଦିଗରେ ପ୍ରକଟିତ ଏହି ଦଶ ଅବତାର ହିଁ 'ମହାଭାଗବତ' ଅନୁସାରେ ଦଶ ମହାବିଦ୍ୟା । ଏଥିରୁ ଯେଉଁମାନେ କୃଷ୍ଣକାନ୍ତ, ଉଗ୍ର, ଖଡ୍‌ଗଖର୍ପରଧାରିଣୀ; ସେମାନେ କାଳୀକୁଳର ଅନ୍ତର୍ଗତ, ଯଥା—କାଳୀ, ତାରା, ମାତଙ୍ଗୀ, ଧୂମାବତୀ ଓ ଛିନ୍ନମସ୍ତା । କିନ୍ତୁ ଯେଉଁମାନେ ସ୍ୱର୍ଣ୍ଣାରୁଣବର୍ଣ୍ଣ, ଅତିସୁନ୍ଦର, ଭବ୍ୟାତିଭବ୍ୟ ସେମାନେ ହେଲେ ଶ୍ରୀ କୁଳର ଅନ୍ତର୍ଗତ ଯଥା—ଶ୍ରୀ [ଷୋଡଶୀ], ଭୁବନେଶ୍ୱରୀ, ବଗଳା, ତ୍ରିପୁରଭୈରବୀ ଓ କମଳା ।

ଅନନ୍ତ ଶକ୍ତିର ଅସଂଖ୍ୟ ପ୍ରକାଶ ତଦନୁସାରେ ବିମର୍ଶ (ବିସ୍ତାର)କୁ ନେଇ ପ୍ରତ୍ୟକ୍ଷାନୁଭବ ଦର୍ଶନ ।

'ସ୍ୱାତ୍ମୈବ ଲଳିତା ପ୍ରୋକ୍ତା ମନୋଜ୍ଞା ବିଶ୍ୱବିଗ୍ରହା'

ନିଜର ଆତ୍ମା ହିଁ ଲଳିତା, ଆତ୍ମାକୁ ଯେତେ ଲଳିତ, ଯେତେ ମନୋଜ୍ଞ, ଯେତେ କୋମଳ ରୁଚିର କରି ଗଢ଼ିବ, ସେତିକି ପରିମାଣରେ ଦିବ୍ୟସତ୍ତାର ପ୍ରସ୍ଫୁରଣ ହେବ । ଲଳିତା ଶ୍ରୀବିଦ୍ୟାରେ ଏକ ଚୂଡ଼ାନ୍ତ ସାଧନୋପଲବ୍ଧ ବ୍ରହ୍ମବସ୍ତୁ, ପରାଶକ୍ତି । ଆଚାର୍ଯ୍ୟ ଶଙ୍କର, ତାଙ୍କର ଗୁରୁ ଗୋବିନ୍ଦ, ତାଙ୍କ ଗୁରୁ ଗୌଡ଼ପାଦ—ଏହି ଦେବୀଙ୍କର ଉପାସକ ଭାବରେ ପ୍ରସିଦ୍ଧ । ଗୌଡ଼ପାଦଙ୍କ ସୁଭଗୋଦୟ ସ୍ତବ ହିଁ ଆଚାର୍ଯ୍ୟ ଶଙ୍କରଙ୍କ 'ସୌନ୍ଦର୍ଯ୍ୟ ଲହରୀ'ର ଆଧାର । ଐତିହ୍ୟ ଦୃଷ୍ଟିରୁ ଏପରି ଇତିହାସପୁରୁଷଙ୍କ ଅର୍ଚ୍ଚନାପରମ୍ପରା ବୋଧହୁଏ ଆଉ କୌଣସି ଦେବଦେବୀଙ୍କର ନାହିଁ । ଏତଦ୍‌ବ୍ୟତୀତ ମହେଶ-ମାଧବ-ବିଧାତୃ-ମନ୍ମଥ-ଗଣେଶ-ସ୍କନ୍ଦ-ନନ୍ଦି-ଇନ୍ଦ୍ର-ମନୁ-ଚନ୍ଦ୍ର- କୁବେର - ଲୋପାମୁଦ୍ରା-ଅଗସ୍ତ୍ୟ-ଅଗ୍ନି-ସୂର୍ଯ୍ୟ-କ୍ରୋଧଭଟ୍ଟାରକ ଦୁର୍ବାସା ପ୍ରଭୃତି ଉପାସକ ପ୍ରବରଙ୍କ ସ୍ୱତନ୍ତ୍ର ପରମ୍ପରା ବା ପଦ୍ଧତି ଏହି ଦେବୀଙ୍କ ଅର୍ଚ୍ଚନା ଓ ସାଧନା ସକାଶେ ରହିଛି । ପାଶ-ଅଙ୍କୁଶ-ଇକ୍ଷୁ-ବାଣଧରା ଏହି ଦେବୀଙ୍କର ଧ୍ୟାନ ହେଉଛି—

ଆରକ୍ତାଭାଂ ତ୍ରିନେତ୍ରାମରୁଣିମବସନାଂ ରତ୍ନତାଟଙ୍କରମ୍ୟାଂ
ହସ୍ତାମ୍ଭୋଜୈଃ ସପାଶାଙ୍କୁଶମଦନଧନୁଃସାୟକୈଃସ୍ଫୁରନ୍ତୀମ୍ ।
ପଞ୍ଚବ୍ରହ୍ମାସନସ୍ଥାଂ ଶଶିଧରମୁକୁଟାଂ ସବରନ୍ୟୋକ୍ଷଲାଙ୍ଗୀଂ
ଧ୍ୟାୟାମ୍ୟମ୍ଭୋରୁହସ୍ଥା ହରିହରନମିତାମୀଶ୍ୱରୀମୀଶ୍ୱରାଣାମ୍ ॥

ମା' ତୋର କାନ୍ତି ରକ୍ତବର୍ଣ୍ଣ । ଅରୁଣବସନେ ଶୋଭନ ॥
ରତ୍ନତାଟଙ୍କ ଚତୁର୍ଭୁଜା । ହସ୍ତପଦ୍ମରେ ତୋର ସଜା ॥
ପାଶ ଅଙ୍କୁଶ ପୁଷ୍ପ ବାଣ । ଇକ୍ଷୁଦଣ୍ଡ ତୋ ଧନୁ ଜାଣ ॥
ପଞ୍ଚବ୍ରହ୍ମରେ ତୁ ବିରାଜ । ଶିଶିଧରେ ତୁ ଅତି ସାଜ ॥
ରମ୍ୟାତିରମ୍ୟ ଦେହ ତୋର । ଉଜ୍ଜ୍ୱଳ ଦିବ୍ୟପ୍ରଭା ସାର ॥
ତ୍ରିନେତ୍ରା ପଦ୍ମପୁଷ୍ପେ ଶୋଭା । ନମନ୍ତି ହରିହର ଦେବା ॥
ଦେବ ଦେବେଶି ହୃଦେ ମୋର । ସ୍ଫୁରୁତ ଭକ୍ତି ସେନା କର ॥

ଉଦ୍ୟଦ୍ଭାନୁସହସ୍ରାଭା ଦେବକାର୍ଯ୍ୟସମୁଦ୍ୟତା ଏହି ମହାଦେବୀ ଲଳିତା ଧାରଣ କରିଥିବା ପାଶ ରାଗର, ଅଙ୍କୁଶ କ୍ରୋଧର, ଇକ୍ଷୁଦଣ୍ଡ ମନର ଏବଂ ପଞ୍ଚଶାୟକ ପଞ୍ଚତନ୍ମାତ୍ରର ପ୍ରତୀକ । ବ୍ରହ୍ମା, ବିଷ୍ଣୁ, ରୁଦ୍ର, ଶିବ ଓ ସଦାଶିବ— ଏହି ପଞ୍ଚବ୍ରହ୍ମଙ୍କୁ ନେଇ କଳ୍ପିତ ଆସନରେ ଅଧିଷ୍ଠିତ ଏହି ମହାଦେବୀ ପଞ୍ଚ-ପ୍ରେତାସନା ବୋଲି କଥିତ । ତାହାଙ୍କ ସକଳକାମନାପୂରଣକାରୀ ଚିନ୍ତାମଣି ଆସନର ତଳେ ରଖାଯାଇଥିବା ପିକଦାନୀ (ପତଦ୍‌ଗ୍ରହ) ସ୍ୱୟଂ ଦେବରାଜ ଇନ୍ଦ୍ର । ତେଣୁ ଭୈରବଯାମଳରେ କୁହାଯାଇଛି—

ତତ୍ର ଚିନ୍ତାମଣିମୟଂ ଦେବ୍ୟାମନ୍ଦିରମୁତ୍ତମମ୍ ।
ଶିବାତ୍ମକେ ମହାମଞ୍ଚେ ମହେଶାନୋପବର୍ହଣେ ॥
ଅତିରମ୍ୟତଳେ ତତ୍ର କଶିପୁଶ୍ଚ ସଦାଶିବଃ ।
କୃତକାଶ୍ଚ ଚତୁଷ୍ପାଦା ମହେନ୍ଦ୍ରଶ୍ଚ ପତଦ୍‌ଗ୍ରହଃ ।
ତତ୍ରାସ୍ତେ ପରମେଶାନୀ ମହାତ୍ରିପୁରସୁନ୍ଦରୀ ॥

ରାଜରାଜେଶ୍ୱରୀ ପରାଶକ୍ତି ମହାତ୍ରିପୁରସୁନ୍ଦରୀ ଲଳିତାଙ୍କର ଉପାସନା ଚତୁଃଷଷ୍ଟି-ଉପଚାରରେ ମହାସମାରୋହରେ ଦକ୍ଷିଣଭାରତର ଶ୍ରୀପୀଠରେ ପ୍ରତି ପୂର୍ଣ୍ଣିମା ଓ ସଙ୍କ୍ରାନ୍ତିରେ ଅନୁଷ୍ଠିତ ହୁଏ । ଏହାଙ୍କର ପୂଜା ପଦ୍ଧତି ପରଶୁରାମକଳ୍ପସୂତ୍ରରେ ସୁନ୍ଦରଭାବରେ ନିବଦ୍ଧ । ତଦନୁସାରେ ଉମାନନ୍ଦନାଥଙ୍କ ନିତ୍ୟୋତ୍ସବ ମଧ୍ୟ ଏକ ଉପାଦେୟ ଗ୍ରନ୍ଥ । ଏହାଙ୍କ ବିଷୟରେ ବ୍ରହ୍ମାଣ୍ଡ ପୁରାଣରେ ବିସ୍ତୃତ ବିବରଣୀ ଦେଖିବାକୁ ମିଳେ । ଏହାଙ୍କର ଉପାସନା 'ସତ୍ୟଂ ଶିବଂ ସୁନ୍ଦରଂ'ର ଉପାସନା ।

ସୁନ୍ଦରୀ ଶ୍ରୀଦେବୀ ହେତୁ ମହାଲକ୍ଷ୍ମୀ । ସେ ସ୍ୱ ବର୍ଣ୍ଣାନୁସାରେ ରକ୍ତକାଳୀ । ସେ ମଧ୍ୟ ସରସ୍ୱତୀ (ବେଗବତୀ) ସମ୍ପଦ୍ ପ୍ରଦାନ ବିଷୟରେ । ତେଣୁ କୁହା-ଯାଇଛି— 'ସମ୍ପଦ୍ ପ୍ରଦାନ ସମୟରେ ନବବଦ୍ରୁମାଭା' । କାଳୀ ଯେପରି ଅନିରୁଦ୍ଧ ସରସ୍ୱତୀ (ବେଗବତୀ), ତାରା ଯେପରି ନୀଳ ସରସ୍ୱତୀ, ସୁନ୍ଦରୀ ଷୋଡଶୀ ଲଳିତା ସେପରି ସମ୍ପଦ୍‌ସରସ୍ୱତୀ ନାମରେ ଅଭିହିତ । କାଳୀ ଆଦ୍ୟା ହେଲେ ସେ ତ୍ରିଗୁଣାତୀତା ପରା ଶକ୍ତି ।

## ଶ୍ରୀବିଦ୍ୟା :

'ବିଦ୍ୟା' କ'ଣ ? ଏ ବିଷୟରେ ଚଣ୍ଡୀ କହେ—'ସା ବିଦ୍ୟା ପରମା ମୁକ୍ତେର୍ହେତୁଭୂତା ସନାତନୀ' (୧।୭), 'ବିଦ୍ୟାସି ସା ଭଗବତୀ ପରମା ହି ଦେବୀ (୪।୯)—ପରମ ମୁକ୍ତିର ହେତୁଭୂତ ସନାତନୀ 'ଦେବୀ ହିଁ ବିଦ୍ୟା' । ତେଣୁ ପରମ ମୁକ୍ତିପ୍ରଦା ଶ୍ରୀଦେବୀ ମହାତ୍ରିପୁରସୁନ୍ଦରୀ ହିଁ 'ଶ୍ରୀବିଦ୍ୟା' । ପୁଣି ଆଚାର୍ଯ୍ୟ ଶଙ୍କରଙ୍କ ମତରେ 'ବିଦ୍ୟା ହି କା ? ବ୍ରହ୍ମଗତିପ୍ରଦା ଯା'—ଯାହା ବ୍ରହ୍ମଗତି ପ୍ରଦାନ କରେ ତାହା ହିଁ ବିଦ୍ୟା । ଶ୍ରୀଯୁକ୍ତ-ବିଦ୍ୟା ହେଉଛି ଶ୍ରୀବିଦ୍ୟା । 'କଏ ପୁଣି ଶ୍ରୀଯୁକ୍ତ ? ତାର ଉତ୍ତର ମଧ୍ୟ ଦେଇଛନ୍ତି । ଭଗବତ୍ପାଦ ଶଙ୍କର—'ଶ୍ରୀମାଂଶ୍ଚ କୋ ଯସ୍ୟ ସମସ୍ତତୋଷଃ'—ଯାହା ଠାରେ ସକଳ ସନ୍ତୋଷ ବିଦ୍ୟମାନ 'ସେ ହିଁ ଶ୍ରୀମାନ୍' । ତେଣୁ ଶ୍ରୀବିଦ୍ୟା ସନ୍ତୋଷ ଯୁକ୍ତ ବ୍ରହ୍ମ ଗତିପ୍ରଦାତ୍ମକ ଅପୂର୍ବ ବିଦ୍ୟା । ଅତଏବ କୁହାଯାଇଛି—

'ମୋକ୍ଷୈକହେତୁବିଦ୍ୟା ସା ଶ୍ରୀବିଦ୍ୟା ନାତ୍ର ସଂଶୟଃ'

ଶ୍ରୀବିଦ୍ୟା ହିଁ ଏକମାତ୍ର ମୋକ୍ଷର କାରଣ । ଏହା ନିଃସନ୍ଦେହ । ଏହି ବିଦ୍ୟା ଜାଣିଥିବା ଲୋକପାଇଁ ହିଁ 'ବିଦ୍ୱାନ୍' ଶବ୍ଦ ପ୍ରଯୋଜ୍ୟ ।

ନ ଶିଳ୍ପାଦିଜ୍ଞାନଯୁକ୍ତେ ବିଦ୍ୱଚ୍ଛବ୍ଦଃ ପ୍ରଯୁଜ୍ୟତେ ॥
ମୋକ୍ଷୈକହେତୁବିଦ୍ୟାବାନ୍ ସ ବୈ ବିଦ୍ୱାନିତୀର୍ଯ୍ୟତେ ।
ତସ୍ମାଦ୍ ବିଦ୍ୟା ତୁ ଶ୍ରୀବିଦ୍ୟା ତଦ୍ୱିଦ୍ ବିଦ୍ୱାନିତୀର୍ଯ୍ୟତେ ॥

ଶିଳ୍ପାଦିଜ୍ଞାନ ଥିବା ଲୋକ ପାଇଁ 'ବିଦ୍ୱାନ୍' ଶବ୍ଦ ପ୍ରୟୋଗ କରାଯାଏ-ନାହିଁ । ଏକମାତ୍ର ମୋକ୍ଷପ୍ରଦ ବିଦ୍ୟା ଶ୍ରୀବିଦ୍ୟା ସାଧକ ହିଁ ଯଥାର୍ଥରେ ବିଦ୍ୱାନ୍ । ତେଣୁ ଶ୍ରୀବିଦ୍ୟା ହେଉଛି ବ୍ରହ୍ମବିଦ୍ୟା ବା ଶ୍ରେଷ୍ଠବିଦ୍ୟା ।

ପୁଣି ଦେବୀମାନଙ୍କ ମଧ୍ୟରେ ଯେପରି ରାଜରାଜେଶ୍ୱରୀ ମହାତ୍ରିପୁର-ସୁନ୍ଦରୀ ଲଳିତା—ଶୁଦ୍ଧାତିଶୁଦ୍ଧ ପରାବିଦ୍ୟା ମହାଶକ୍ତି, ମନ୍ତ୍ରମାନଙ୍କ ମଧ୍ୟରେ ସେହିପରି ତାଙ୍କ ମନ୍ତ୍ରରାଜ ଶ୍ରୀବିଦ୍ୟା ସର୍ବଶ୍ରେଷ୍ଠ ଗୁହ୍ୟାତିଗୁହ୍ୟ ବ୍ରହ୍ମବିଦ୍ୟା । ଏହି ମନ୍ତ୍ର ଅତ୍ୟନ୍ତ ଗୋପନୀୟ ହେତୁ ପୁସ୍ତକମାନଙ୍କରେ ଅନ୍ୟାନ୍ୟ ମନ୍ତ୍ରପରି ଏହାର ସ୍ପଷ୍ଟ ଉଲ୍ଲେଖ ଦେଖାଯାଏ ନାହିଁ । ଯେଉଁମାନେ ପରଂପରା କ୍ରମେ

ଦୀକ୍ଷିତ ଓ ଜାଣନ୍ତି ସେମାନେ ଲେଖନ୍ତି ନାହିଁ । ଯେଉଁମାନେ ଲେଖନ୍ତି ସେମାନେ ଅଦୀକ୍ଷିତ ହେତୁ ଜାଣନ୍ତି ନାହିଁ । ତେଣୁ ହିଁ ଗୁରୁ ନ କରି ପୁସ୍ତକରୁ ପଢ଼ି ମନ୍ତ୍ରଜପ ନିଷ୍ଫଳ ବୋଲି କୁହାଯାଇଛି—

ପୁସ୍ତକେ ଲିଖିତା ବିଦ୍ୟା ଯେନ ସୁନ୍ଦରି ଜପ୍ୟତେ ।
ସିଦ୍ଧିର୍ନଜାୟତେ ଦେବି କଳ୍ପକୋଟିଶତୈରପି ॥ (ଷଟ୍କର୍ମ ଦୀପିକା)
ପୁସ୍ତକେ ଲିଖିତାନ୍ ମନ୍ତ୍ରାନବଲୋକ୍ୟ ଜପେତ୍ତୁ ଯଃ ।
ସ ଜୀବନ୍ନେବ ଚଣ୍ଡାଳୋ ମୃତଃ ଶ୍ୱାନୋ ଭବିଷ୍ୟତି ॥(ନିତ୍ୟୋତ୍ସବଃ)
ପୁସ୍ତକେ ଲିଖିତାନ୍ ମନ୍ତ୍ରାନ୍ ବିଲୋକ୍ୟ ପ୍ରଜପନ୍ତି ଯେ ।
ବ୍ରହ୍ମହତ୍ୟାସମଂ ତେଷାଂ ପାତକଂ ପରିକୀର୍ତ୍ତିତମ୍ ॥(କୁଳାର୍ଣ୍ଣବଃ,୧୫।୨୨)

ପୁଣି ମନ୍ତ୍ରଜପର ସିଦ୍ଧି ସ୍ୱାରେ ଗୁରୁକୃତ ଜନନ, ଦୀପନ, ତାଡନ, ବୋଧନ, ଅଭିଷେକ, ବିମଳୀକରଣ, ଜୀବନ, ତର୍ପଣ, ଗୋପନ, ଆପ୍ୟାୟନ ପ୍ରଭୃତି ଦଶଧା ସଂସ୍କାରପୂର୍ବକ ମନ୍ତ୍ରଚୈତନ୍ୟ ଆସିଲେ ହିଁ ମନ୍ତ୍ର ଫଳପ୍ରଦ ହୁଏ ବୋଲି ଶାସ୍ତ୍ର କହେ ଓ ଅନୁଭୂତିରୁ ଜଣାଯାଏ । ସେଥିରେ ପୁଣି ଋଷି- ଛନ୍ଦୋ -ଦେବତା-ଜ୍ଞାନ ଏକ ଅପରିହାର୍ଯ୍ୟ ଅଙ୍ଗ । ତେଣୁ କୁହାଯାଇଛି—

ଋଷିଛନ୍ଦୋଽପରିଜ୍ଞାନାନ୍ନମନ୍ତ୍ରଃ ଫଳଦୋ ଭବେତ୍ ।
ଦୌର୍ବଲ୍ୟଂ ଯାତି ମନ୍ତ୍ରାଣାଂବିନିଯୋଗମଜାନତାମ୍ ॥(ଗୌତମୀୟତନ୍ତ୍ରେ)

ଋଷିଚ୍ଛନ୍ଦୋଦେବତାନାଂ ବିନ୍ୟାସେନ ବିନା ଯଦି ।
ଜପେତ୍ ସାଧକୋ ନିତ୍ୟ ତତ୍ସର୍ବଂ ବିଫଳଂ ଭବେତ୍ ॥
(ଶାକ୍ତାନନ୍ଦତରଙ୍ଗିଣ୍ୟାମ୍)

ଅବିଦିତ୍ୱା ଋଷିଂ ଛନ୍ଦୋ ଦୈବତଂ ଯୋଗମେବ ଚ ।
ଯୋଽଧ୍ୟାପଯେଜ୍ଜପେଦ୍ ବାପି ପାପୀୟାନ୍ ଜାୟତେ ତୁ ସଃ ॥
(ଗୀତାରହସ୍ୟୋଦ୍ଧୃତ-ସ୍ମୃତିଶାସ୍ତ୍ରେ)

ଆଜିକାଲି ଯା ହାତରେ ସିଏ ଚଉଦ ପା' । ମନ୍ତ୍ର ଜାଣିବାକୁ ସମସ୍ତଙ୍କର ଆଗ୍ରହ । ଧର୍ମ୍ମ, ଦାସ୍ଯ ଓ ବିଶ୍ୱାସ ବିନା ସବୁସ୍ତେ ମନ୍ତ୍ର ଉପରେ କଲମ ଚଳାଉଛନ୍ତି । ସାଧନାର କ୍ଳେଶ ସ୍ୱୀକାର କରିବାକୁ କେହି କାହୁଁ ପ୍ରସ୍ତୁତ

କୁହନ୍ତି । ଅଥଚ 'ସମ୍ପ୍ରଦାୟ-ବିଶ୍ୱାସାଭ୍ୟାଂ ସର୍ବସିଦ୍ଧିଃ'(ପରଶୁରାମକଳ୍ପସୂତ୍ର ୧।୯) ବୋଲି ଶାସ୍ତ୍ର ବାଣୀ । ଶିଷ୍ୟଙ୍କ କଥା ଦୂରେ ଥାଉ ସମ୍ପ୍ରଦାୟ ପରମ୍ପରା ଆଜିର ଅନେକ ଗୁରୁଙ୍କର ବି ନାହିଁ । ସଦ୍‌ଗୁରୁ ସ୍ୱାଶ୍ରିତ ଶିଷ୍ୟଙ୍କୁ ବର୍ଷେ ପର୍ଯ୍ୟନ୍ତ ପାଖରେ ରଖି ଅପେକ୍ଷା କରାଇ ପରୀକ୍ଷା କରି ମନ୍ତ୍ରଦେବା ବ୍ୟବସ୍ଥା ଅଛି—

'ଗୁରୁତା ଶିଷ୍ୟତା ବାଽପି ତୟୋର୍ବତ୍ସରବାସତଃ ।

ସଦ୍‌ଗୁରୁଃ ସ୍ୱାଶ୍ରିତଂ ଶିଷ୍ୟଂ ବର୍ଷମେକଂ ପରୀକ୍ଷୟେତ୍ (ତ୍ରିଶିକ୍ଷସୂତ୍ରେ) ॥

କିନ୍ତୁ ଅନାକୁଳ ଶିଷ୍ୟର ବେଳ ନାହିଁ ଗୁରୁଙ୍କର ଗୁରୁତା ବୁଝିବା ପାଇଁ କି ବ୍ୟାକୁଳ ଗୁରୁଙ୍କର ଧୈର୍ଯ୍ୟ ନାହିଁ ଶିଷ୍ୟଙ୍କୁ ପରୀକ୍ଷା କରିବା ପାଇଁ । ଫଳରେ 'ଗୁରବୋ ବହବଃ ସନ୍ତି ଶିଷ୍ୟବିତ୍ତାପହାରକାଃ, ଗୁରବସ୍ତୁ ବିରଳୋ ଲୋକେ ଶିଷ୍ୟସନ୍ତାପହାରକଃ'—ଶିଷ୍ୟବିତ୍ତାପହାରକ ଗୁରୁଙ୍କର ସିନା ଜୟଗାନ, ଶିଷ୍ୟ ସନ୍ତାପହାରକ ଗୁରୁ ସର୍ବଦା ଆତ୍ମଲୀନ ସାଧନାମଗ୍ନ ।

ଶ୍ରୀବିଦ୍ୟା ପରମ୍ପରାରେ ମନ୍ତ୍ରପ୍ରାପ୍ତି କଠିନ ଓ ଆୟାସସାଧ୍ୟ । ଏଥିରେ ସବୁମନ୍ତ୍ରର ଯାଥାଯଥ ବିନିଯୋଗ ପଦ୍ଧତି ଗୁରୁମୁଖଗମ୍ୟ ହୋଇଥାଏ । ସବୁ-ଦେବତାମାନଙ୍କର ମନ୍ତ୍ରର ପୁରଶ୍ଚରଣ, ଜପ, ହୋମ, ଭୋଜନାଦି ଦଶାଂଶ-କ୍ରମରେ କଲାପରେ ଶେଷରେ ଶ୍ରୀବିଦ୍ୟା । ତେଣୁ ଶ୍ରୀବିଦ୍ୟା-ଉପାସକମାନଙ୍କର ସର୍ବମନ୍ତ୍ରାଧିକାର ଶାସ୍ତ୍ରରେ ସ୍ୱୀକୃତ ହୋଇଛି । ଶ୍ରୀବିଦ୍ୟା ମନ୍ତ୍ରଟିରୁ ମଧ୍ୟ ବ୍ରହ୍ମା ବିଷ୍ଣୁଙ୍କ ଦଶାବତାର, ଏକାଦଶରୁଦ୍ର, ଦେବୀଙ୍କର ଦଶାବତାର ଓ ଅନ୍ୟାନ୍ୟ ବହୁଦେବତାଙ୍କ ଧ୍ୟାନମନ୍ତ୍ର ପ୍ରକାଶ ପାଏ । ଏହି ମନ୍ତ୍ରରୁ ଗାୟତ୍ରୀ ମନ୍ତ୍ରର ଜନ୍ମ । ଶ୍ରୀ ଦେବ୍ୟଥର୍ବଶୀର୍ଷରେ କଥିତ—

କାମୋ ଯୋନିଃ କମଳା ବଜ୍ରପାଣିର୍ଗୁହା ହସା ମାତରିଶ୍ୱାଭ୍ରମିନ୍ଦ୍ରଃ ।
ପୁନର୍ଗୁହା ସକଳା ମାୟୟା ଚ ପୁରୁଚ୍ୟୈଷା ବିଶ୍ୱମାତାଦିବିଦ୍ୟୋମ୍ ॥

—ଆଦି ବିଦ୍ୟା ବିଶ୍ୱମାତା ହିଁ ଶ୍ରୀବିଦ୍ୟା । ସେ ହିଁ କାମ ବା କନ୍ଦର୍ପର ଯୋନି ବା ଜନନୀ । ସୁନ୍ଦରୀଙ୍କ ସୌନ୍ଦର୍ଯ୍ୟ ବିନା କନ୍ଦର୍ପର ଅବସ୍ଥିତି ହିଁ ଅସମ୍ଭବ । ଯୋଗିରାଜ ଶିବ କନ୍ଦର୍ପ ସ୍ଥୂଳ ସତ୍ତାକୁ ବହିର୍ଜଗତରୁ ଭସ୍ମକରିଦେଲେ ମଧ୍ୟ ସୁନ୍ଦରୀ ଉପାସକ ସେ ମନୋଜରୂପେ ସୂକ୍ଷ୍ମସତ୍ତାରେ ଅନ୍ତର୍ଜଗତରେ ଆହୁରି ଅଧିକ ପ୍ରଭାବଶାଳୀ ହେଲେ । ତେଣୁ ଶ୍ରୀବିଦ୍ୟା ଉପାସକଙ୍କ ମଧ୍ୟରେ ମନ୍ମଥ ଅନ୍ୟତମ । ପରମ୍ପରାକୁ ନେଇ ଏହାର ଅନେକ ଭେଦ । ତଥାପି—

କାମରାଜାଖ୍ୟମନ୍ତ୍ରାନ୍ତେ ଶ୍ରୀବୀଜେନ ସମନ୍ୱିତା ।
ଷୋଡଶାକ୍ଷରବିଦ୍ୟେୟଂ ଶ୍ରୀବିଦ୍ୟେତି ପ୍ରକୀର୍ତ୍ତିତା ॥ (ସୌଭାଗ୍ୟଭାସ୍କର)

ଏହି ଶ୍ରୀବିଦ୍ୟା କହିଲେ ଷୋଡଶୀ ମହାତ୍ରିପୁରସୁନ୍ଦରୀ ରାଜରାଜେଶ୍ୱରୀ ଲଳିତା, ତାଙ୍କର ମନ୍ତ୍ରରାଜ ଓ ତାଙ୍କ ପୂଜାର୍ଚ୍ଚନା ପରମ୍ପରା ସବୁକୁ ବୁଝାଏ । ସବୁବିଦ୍ୟା ମୂଳରେ ଶ୍ରୀବିଦ୍ୟା ଆଉ ସବୁ ସ୍ତ୍ରୀ ହେଉଛନ୍ତି ଶ୍ରୀ—

ବିଦ୍ୟାଃ ସମସ୍ତାସ୍ତବ ଦେବି ଭେଦାଃ
ସ୍ତ୍ରିୟଃ ସମସ୍ତାଃ ସକଳା ଜଗତ୍ସୁ । (ଚଣ୍ଡୀ ୧୧।୬)

ମାତୃଶକ୍ତିକୁ ପବିତ୍ରଭାବରେ ଏଥିରେ ସର୍ବୋଚ୍ଚ ସ୍ଥାନ ଦିଆଯାଇଛି । ପ୍ରତି ଘରେ ସୁଖ ଶାନ୍ତି ଓ ସମୃଦ୍ଧି ସକାଶେ ଶ୍ରୀଦେବୀଙ୍କ ଉପାସନା ଏକ ଅପରିହାର୍ଯ୍ୟ ଆବଶ୍ୟକତା । ଧର୍ମସାଧନାରେ ପତ୍ନୀର ପ୍ରତିଷ୍ଠା ଓ ପରାକାଷ୍ଠା ଏଥିରେ ଏତେ ସ୍ୱୀକୃତି ଲାଭ କରିଛି ଯେ କେହି କେହି ଶ୍ରୀବିଦ୍ୟାକୁ ସ୍ତ୍ରୀ ବିଦ୍ୟା ବୋଲି ମଧ୍ୟ କହିଥାନ୍ତି । ବସ୍ତୁତଃ ମହର୍ଷି ମନୁ 'ସ୍ତ୍ରୀ ହିଁ ଶ୍ରୀ' ବୋଲି କହିଛନ୍ତି—

ପ୍ରଜନାର୍ଥଂ ମହାଭାଗାଃ ପୂଜାର୍ହା ଗୃହଦୀପ୍ତୟଃ ।
ସ୍ତ୍ରିୟଃ ଶ୍ରିୟଶ୍ଚ ଗେହେଷୁ ନ ବିଶେଷୋଽସ୍ତି କଶ୍ଚନ ॥ (ମନୁ ୯।୨୬)

ପ୍ରଜୋତ୍ପାଦନ ବା ସନ୍ତାନର ଜନନୀ ହେବୁ ଗୃହଦୀପ୍ତି ବା ଘରର ଆଲୋକ ଭଳି ନାରୀମାନେ ପୂଜ୍ୟା ଅଟନ୍ତି । ପ୍ରକୃତରେ ସ୍ତ୍ରୀ ହିଁ ଗୃହର ଶ୍ରୀ, ଗୃହଲକ୍ଷ୍ମୀ ।

ଉତ୍ପାଦନମପତ୍ୟସ୍ୟ ଜାତସ୍ୟ ପରିପାଳନମ୍ ।
ପ୍ରତ୍ୟହଂ ଲୋକଯାତ୍ରାୟାଃ ପ୍ରତ୍ୟକ୍ଷଂ ସ୍ତ୍ରୀନିବନ୍ଧନମ୍ ॥
ଅପତ୍ୟଂ ଧର୍ମକାର୍ଯ୍ୟାଣି ଶୁଶ୍ରୂଷା ରତିରୁତ୍ତମା ।
ଦାରାଧୀନସ୍ତଥା ସ୍ୱର୍ଗଃ ପିତୃଣାମାତ୍ମନଶ୍ଚ ହ ॥ (ମନୁ ୯।୨୭, ୨୮)

ପିଲାମାନଙ୍କୁ ଜନ୍ମଦେବା, ପାଳନ କରିବା, ପ୍ରତିଦିନର ଘରକାମ ଦେଖିବା—ଏସବୁ ସ୍ତ୍ରୀର କାମ । ସନ୍ତାନ ସନ୍ତତି, ଧର୍ମ କର୍ମ, ସେବା, ସୁରତି- ଏସବୁ ତଥା ନିଜର ଓ ପିତୃଲୋକଙ୍କର ସ୍ୱର୍ଗ ଏସବୁ ଦାରାଧୀନ ଅର୍ଥାତ୍ ସ୍ତ୍ରୀର ଅଧୀନ ।

'ଗୃହିଣୀ ଗୃହମୁଚ୍ୟତେ' । ଗୃହଲକ୍ଷ୍ମୀର ସଂତୋଷ ଓ ସହଯୋଗରେ ପିତୃଏ ମର୍ଯିଷ ହେବେ, ଗୃହକର୍ତ୍ତାର ଉନ୍ନତି ହେବ, ପରିବାରରେ ଶାନ୍ତି ଆସିବ । ଭକ୍ତକବିଙ୍କ ଭାଷାରେ ହେବ—'ବିକୁଣ୍ଠ ଯମାନ ଅଟେ ଆହା ସେହି ଘର, ପରସ୍ପର ଶାନ୍ତି ଯହିଁ ଥାଏ ନିରନ୍ତର' । 'ଇହୈବ ତୈର୍ଜିତଃ ସର୍ଗୋ ଯେଷାଂ ସାମ୍ୟେ ସ୍ଥିତଂ ମନଃ' (ଗୀତା ୫।୧୯)—ସମସ୍ତଙ୍କ ମନର ମିଳନରେ ହିଁ ସ୍ୱର୍ଗସୁଖ ସମ୍ଭବ ।

ସଂତୁଷ୍ଟୋ ଭାର୍ଯ୍ୟୟା ଭର୍ତ୍ତା ଭର୍ତ୍ତ୍ରା ଭାର୍ଯ୍ୟା ତଥୈବ ଚ ।
ଯସ୍ମିନ୍ନେବ କୁଲେ ନିତ୍ୟଂ କଲ୍ୟାଣଂ ତତ୍ର ବୈ ଧ୍ରୁବମ ॥ (ମନୁ,୩।୬୦)

ସ୍ୱାମୀ ଉପରେ ସ୍ତ୍ରୀ ଏବଂ ସ୍ତ୍ରୀ ଉପରେ ସ୍ୱାମୀ ସନ୍ତୁଷ୍ଟ ହେଲେ ହିଁ ଘରେ ଶାନ୍ତି ଓ କଲ୍ୟାଣ । କାମେଶ୍ୱରୀ-କାମେଶ୍ୱରଙ୍କ ଏକ ବିନ୍ଦୁରେ ମିଳନ (Union or agreement at one point) ହିଁ ଶ୍ରୀବିଦ୍ୟା । ଲଳିତା ସଦା କାମେଶ୍ୱରାଙ୍କନିଲୟା । ତେଣୁ ସୁବାସିନୀ ପୂଜା ଶ୍ରୀବିଦ୍ୟା-ଉପାସନାର ଏକ ଅଙ୍ଗ । ଅମର କୋଷ କହେ 'ଚରଣ୍ଟି ରୁ ସୁବାସିନୀ—'ଚରମ୍ ଅଟନ୍ତି ପିତୃ-ଗୃହାତ୍ ପତିଗୃହମ୍' ବିବାହପରେ ଶରଦନ ପିତୃଗୃହରୁ ପତିଗୃହକୁ ଚାଲଯାଉ-ଥିବାରୁ ବିବାହିତା ସ୍ତ୍ରୀର ନାମ 'ଚରଣ୍ଟି' । ବିବାହପରେ ପତି ଗୃହରେ 'ସୁଷ୍ଠୁ ବାସ କରୁଥିବାରୁ', ସେମାନଙ୍କୁ କୁହାଯାଏ 'ସୁବାସିନୀ' । ବିବାହଯୋଗ୍ୟା ପ୍ରାପ୍ତଯୌବନା କନ୍ୟା ସ୍ୱ (ପିତାଙ୍କର) ଗୃହରେ ବାସ କରୁଥିଲବେଳେ ମଧ୍ୟ 'ସୁବାସିନୀ' ପଦବାଚ୍ୟା ହୋଇପାରେ । ହସ୍ତକରସ୍ଥ କିନ୍ତୁ 'ସୁବାସିନୀ' କହିଲେ ସାବକାଳଂ ଜୀବତ୍ ପତିକା' ବା ସବୁକାଳେ ଯାହାଙ୍କ ପତି ଜୀବିତ ଥାଆନ୍ତି ବୋଲି ଉଲ୍ଲେଖ କରିଥିବାରୁ ସାଧାରଣତଃ 'ସାଧ୍ୱୀ ସଧବା'ଙ୍କୁ ଗ୍ରହଣ କରଯାଏ ।

ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ ।
ଯତ୍ରୈତାସ୍ତୁ ନ ପୂଜ୍ୟନ୍ତେ ସର୍ବାସ୍ତତ୍ରାଫଳାଃ କ୍ରିୟାଃ ॥ (ମନୁ ୩।୫୬)

ଯେଉଁଠାରେ ସ୍ତ୍ରୀମାନେ ପୂଜା ପାଆନ୍ତି, ସେଠାରେ ଦେବତାମାନେ ବିଳାସ କରନ୍ତି । ଯେଉଁଠାରେ ସ୍ତ୍ରୀମାନଙ୍କର ପୂଜା ନାହିଁ, ସେଠାରେ ସବୁ ନିଷ୍ଫଳ । କୌଣସି କାମର କିଛି ଫଳ ନାହିଁ ।

ଆବଶ୍ୟକ ବୈଦିକ ଧର୍ମ ଏହା ବଚନରେ ପ୍ରକାଶ କରେ କିନ୍ତୁ ଆଚରଣରେ ସ୍ତ୍ରୀମାନଙ୍କୁ ଶୂଦ୍ର କୋଟିରେ ରଖି ଭୋଗ୍ୟଜୀବ କରିଥିଲାବେଳେ ଶାକ୍ତ ସେମାନଙ୍କୁ ଦେବତା କରି ଯୋଗ-ସାଧନାରେ ଉପଯୋଗ କଲେ ।

'ଆରାଧିତା ସୈବ ନୃଣାଂ ଭୋଗସ୍ୱର୍ଗାପବର୍ଗଦା' (ଚଣ୍ଡୀ, ୧୩।୫)

ଶକ୍ତିର ଆରାଧନାରେ ଭୋଗ, ସ୍ୱର୍ଗ ଓ ମୋକ୍ଷ ସବୁ ସମ୍ଭବ । ଶ୍ରୀପ୍ରାପ୍ତି-ପାଇଁ ଏହି ବିଦ୍ୟା ଶ୍ରୀବିଦ୍ୟା । ଶ୍ରୀବିଦ୍ୟୋପାସକ ଆଚାର୍ଯ୍ୟ ଶଙ୍କର 'କଲ୍ୟାଣ ବୃଷ୍ଟି ସ୍ତବ' ପଢ଼ି ଭିକ୍ଷାବେଳେ ସମ୍ବଳହୀନ ବୃଦ୍ଧା ଦେଇଥିବା ଅଁଳା କୋଳିଟିର ବିନିମୟରେ ବୃଷ୍ଟି କରାଇଥିଲେ ସୁନାର ଅଁଳ କୋଳି । ତେଣୁ ଶ୍ରୀବିଦ୍ୟା ହେଉଛି ଶ୍ରୀପ୍ରଦାୟିନୀ ବିଦ୍ୟା । ଆସନ୍ତୁ ସମସ୍ତେ ତାଙ୍କୁ ବୁଝିବା, ତାଙ୍କର ସେବା କରିବା —ଶ୍ରୀମନ୍ତ ହେବା ।

## ଶ୍ରୀଚକ୍ର:

ଶ୍ରୀଚକ୍ର ବା ଶ୍ରୀଯନ୍ତ୍ର ଶ୍ରୀଦେବୀ ଷୋଡଶୀ ମହାତ୍ରିପୁରସୁନ୍ଦରୀ ଲଳିତାଙ୍କର ଯନ୍ତ୍ରରୂପ । ଏଥିରେ ଦେବୀଙ୍କର ସକଳଶକ୍ତି ଯନ୍ତ୍ରିତ ବା ନିୟନ୍ତ୍ରିତ । ତେଣୁ ଏହାକୁ କୁହାଯାଏ ଯନ୍ତ୍ରରାଜ । ନଅଟି ତ୍ରିକୋଣର ସମାଶ୍ଳେଷରୁ ଉଦ୍ଭୂତ ତେୟାଳିଶି ତ୍ରିକୋଣର ସମାହାର ଏହି ମହାଯନ୍ତ୍ରକୁ 'ନବଯୋନି ଯନ୍ତ୍ର' କୁହାଯାଏ । ଏହି ନବଯୋନିକୁ କେହି କେହି ଧର୍ମ ଅଧର୍ମ, ଆତ୍ମା, ଅନ୍ତରାତ୍ମା, ପରମାତ୍ମା, ଜ୍ଞାନାତ୍ମା, ଜୀବ, ଗ୍ରାହ୍ୟ ଓ ପ୍ରମା ବୋଲି କହନ୍ତି । ସବୁ ଦେବତାଙ୍କର ଯନ୍ତ୍ରରୂପ ଏହି ଚକ୍ରରାଜ ଶ୍ରୀଚକ୍ରର ଅଂଶବିଶେଷ ।

ବିନ୍ଦୁ-ତ୍ରିକୋଣ-ବସୁକୋଣ-ଦଶାରଯୁଗ୍ମ-
ମନ୍ୱସ୍ର-ନାଗଦଳ ସଂଯୁତ-ଷୋଡଶାରମ୍ ।
ବୃତ୍ତତ୍ରୟଂ ଚ ଧରଣୀସଦନତ୍ରୟଂ ଚ
ଶ୍ରୀଚକ୍ରମେତଦୁଦିତଂ ପରଦେବତାୟାଃ ॥

(୧) ବିନ୍ଦୁ, (୨) ତ୍ରିକୋଣ, (୩) ଅଷ୍ଟକୋଣ, (୪) ଅନ୍ତର୍ଦଶାର, (୫) ବହିର୍ଦଶାର, (୬) ଚତୁର୍ଦଶାର, (୭) ଅଷ୍ଟଦଳପଦ୍ମ, (୮) ଷୋଡ଼ଶଦଳ

ପଦ୍ମ, ତାପରେ ବୃତ୍ତତ୍ରୟ ଏବଂ ଶେଷରେ (୯) ତିନୋଟି ଚତୁରସ୍ର ଭୂପୁରକୁ ନେଇ ନବାବରଣ । ଅନ୍ତଃକୋଣରେ ଷୋଡ଼ଶ ନିତ୍ୟାଙ୍କର ଅର୍ଚ୍ଚନା ପରେ (୧) ତ୍ରୈଲୋକ୍ୟମୋହନଚକ୍ର ନାମକ ପ୍ରଥମ ଆବରଣ ପ୍ରଥମ ଭୂପୁରରେ ଦଶସ୍ଥାନରେ ଦଶସିଦ୍ଧି ଦେବୀ, ଦ୍ୱିତୀୟ ଭୂପୁରରେ ଆଠ ସ୍ଥାନରେ ଅଷ୍ଟମାତୃ-ଦେବୀ ତୃତୀୟ ଭୂପୁରର ଦଶ ସ୍ଥାନରେ ଦଶ ମୁଦ୍ରାଶକ୍ତିରୂପ ପ୍ରକଟ ଯୋଗିନୀ; (୨) ସର୍ବାଶାପରିପୂରକଚକ୍ର ନାମକ ଦ୍ୱିତୀୟାବରଣର ଷୋଡଶଦଳ ପଦ୍ମରେ ଷୋଡ଼ଶ ଗୁପ୍ତ ଯୋଗିନୀ; (୩) ସର୍ବସଂକ୍ଷୋଭଣୀନାମକ ତୃତୀୟାବରଣର ଅଷ୍ଟଦଳ ପଦ୍ମରେ ଅଷ୍ଟ ଗୁପ୍ତତର ଯୋଗିନୀ; (୪) ସର୍ବସୌଭାଗ୍ୟ-ଦାୟକ ଚକ୍ରନାମକ ଚତୁର୍ଥାବରଣର ଚତୁର୍ଦ୍ଦଶ ତ୍ରିକୋଣରେ ସର୍ବଦ୍ୱନ୍ଦ୍ୱକ୍ଷୟଙ୍କରୀ ଚତୁର୍ଦ୍ଦଶ ସମ୍ପ୍ରଦାୟଯୋଗିନୀ; (୫) ସର୍ବାର୍ଥସାଧକଚକ୍ରନାମକ ପଞ୍ଚମାବରଣର ଦଶ-ବହିଃ-ତ୍ରିକୋଣରେ ସର୍ବସୌଭାଗ୍ୟଦାୟକ ଦଶ କୁଲୋତ୍ତୀର୍ଣ୍ଣ ଯୋଗିନୀ; (୬) ସର୍ବରକ୍ଷାକରଚକ୍ର ନାମକ ଷଷ୍ଠାବରଣର ଦଶ-ଅନ୍ତଃ-ତ୍ରିକୋଣରେ ସର୍ବୋପସିଦ୍ଧପ୍ରଦ ଦଶନିଗର୍ଭ ଯୋଗିନୀ, (୭) ସର୍ବରୋଗହର ଚକ୍ର ନାମକ ସପ୍ତମାବରଣର ଅଷ୍ଟ ତ୍ରିକୋଣରେ ଅଷ୍ଟରହସ୍ୟ ଯୋଗିନୀ; (୮)ସର୍ବସିଦ୍ଧିପ୍ରଦଚକ୍ର ନାମକ ଅଷ୍ଟମାବରଣସ୍ଥ ତ୍ରିକୋଣର ଚତୁଃପାର୍ଶ୍ୱରେ ଚାରି ଆୟୁଧ ଏବଂ ତିନି କୋଣରେ ତିନି ଅତିରହସ୍ୟ ଯୋଗିନୀ ଏବଂ ଶେଷରେ (୯) ନବମାବରଣରେ ସର୍ବାନନ୍ଦମୟଚକ୍ର ନାମକ ବିନ୍ଦୁରେ ପରାପରରହସ୍ୟ-ଯୋଗିନୀଙ୍କର ସମସ୍ତ ସବିଧି ପୂଜା ଅନୁଷ୍ଠାନ ପରମ୍ପରାକ୍ରମେ ଗୁରୁପଦିଷ୍ଟମାର୍ଗରେ ମହାସମାରୋହରେ ଅନୁଷ୍ଠିତ ହୋଇଥାଏ । ତେଣୁ କୁହାଯାଇଛି—

ଆଦୌ ଦଶାଷ୍ଟଦଶ-ଷୋଡ଼ଶକାଽଷ୍ଟକାଽପି
ପଶ୍ଚାଚ୍ଚତୁର୍ଦ୍ଦଶ ଦଶାଽପି ତତୋ ଦଶାଽଷ୍ଟୌ ।
ପଶ୍ଚାଚ୍ଚତୁଷ୍ଟୟମପି ତ୍ରିତୟଂ ଚ ଷଟ୍କ—
ମଷ୍ଟୋତ୍ତରା ଶତମୟୀ ତ୍ୱମସି ତ୍ୱମେକା ॥

ଏହାଛଡ଼ା ଆହୁରି ଅନେକ ଦେବଦେବୀଙ୍କର ପୂଜା ଶ୍ରୀଚକ୍ରରେ ହୋଇଥାଏ । ଏହି ସମସ୍ତଙ୍କର ଶ୍ରୀଚକ୍ରରେ ପୂଜାକୁ ହିଁ 'ଚକ୍ରପୂଜା' କୁହାଯାଏ । ଦୀକ୍ଷିତ ସାଧକଗଣ ସ୍ୱଶକ୍ତି ସହ ଏକତ୍ର ସମବେତ ହୋଇ ପୂଜାକରୁଥିବାରୁ ମଧ୍ୟ

ଏହାକୁ 'ଚକ୍ରପୂଜା' କୁହାଯାଏ । ଏହା ଅତ୍ୟନ୍ତ ଗୋପନୀୟ, ଗୁହ୍ୟାତଗୁହ୍ୟ ଓ ରହସ୍ୟମୟ ହୋଇଥିବାରୁ କେବଳ ଗୁରୁମୁଖଗମ୍ୟ ଅଟେ ।

ଶ୍ରୀଚକ୍ର ଅଙ୍କନଠାରୁ ଏହାର ମର୍ମଭେଦ ଆହୁରି କଠିନ । ସମତଳ ଭୂମିରେ ଅଙ୍କିତ ଶ୍ରୀଚକ୍ରକୁ 'ଭୂପ୍ରସ୍ତାର' କୁହାଯାଏ । ଗୋଟିଏ ଆବରଣ ଉପରେ ଆଉ ଗୋଟିଏ ଆବରଣର ସମୋନ୍ନତ ସ୍ଥାପନାକୁ 'ମେରୁପ୍ରସ୍ତାର' କୁହାଯାଏ । କଇଁଛର ପିଠି ପରି 'କୂର୍ମପୃଷ୍ଠ-ଆକାରରେ ମଧ୍ୟ ଶ୍ରୀଚକ୍ର ପ୍ରସ୍ତୁତ କରାଯାଏ । ଏହାଛଡ଼ା ସ୍ଫଟିକ ବା ବଦ୍ରୁମର ଶିବଲିଙ୍ଗ ଉପରେ ମନୋଜ୍ଞ ଭାବରେ ଉତ୍କୀର୍ଣ୍ଣ ଶ୍ରୀଯନ୍ତ୍ରକୁ 'କୈଳାସ ପ୍ରସ୍ତାର' କୁହାଯାଏ ।

ଶ୍ରୀଯନ୍ତ୍ର ପୂଜା ମୁଖ୍ୟତଃ ହୟଗ୍ରୀବମତ, ଆନନ୍ଦଭୈରବ ମତ ଓ ଦକ୍ଷିଣାମୂର୍ତ୍ତି ମତରେ ସଂପନ୍ନ ହୋଇଥାଏ । ହୟଗ୍ରୀବ ମତରେ ଶ୍ରୀଯନ୍ତ୍ରରେ ବିନ୍ଦୁର ଉଲ୍ଲେଖ କରାଯାଏ ନାହିଁ; ଆନନ୍ଦ ଭୈରବ ମତରେ ଶ୍ରୀଯନ୍ତ୍ରରେ ବିନ୍ଦୁର ଉଲ୍ଲେଖ ହେଲେ ହେଁ ପୂଜା ହୁଏ ନାହିଁ, କିନ୍ତୁ ଦକ୍ଷିଣାମୂର୍ତ୍ତି ମତରେ ବିନ୍ଦୁର ଉଲ୍ଲେଖ ଓ ପୂଜା କରାଯାଇ ବିନ୍ଦୁକୁ ନବାବରଣରେ ଗଣନା ନକରି [ବିନ୍ଦୋର୍ନ ଗଣନା ତସ୍ୟ ତେଜ୍ୱୋବରଣକେନ୍ଦ୍ରତ] ସିଂହାସନ ପୀଠ ଭାବରେ ଗ୍ରହଣ କରାଯାଏ । ଏସବୁର ବିସ୍ତୃତ ବିବରଣ ତଥା କାର୍ଯ୍ୟକାରଣ ପ୍ରଭୃତି ଗୁରୁମୁଖଗମ୍ୟ ଅଟେ ।

ଶ୍ରୀଚକ୍ର ହେଉଛି ବିଶ୍ୱବ୍ରହ୍ମାଣ୍ଡ (macrocosm)ର ସୂକ୍ଷ୍ମ (microcosm) ପ୍ରତୀକ ପ୍ରକାଶ । ଏହାର ଆରୋପ ଦେହରେ ମଧ୍ୟ କରାଯାଏ । ଭାବନୋପନିଷଦ୍‌ରେ ଏହି ଅନ୍ତର୍ଯାଗର ବିବରଣ ଦେଖିବାକୁ ମିଳେ । ଏହି ସାଧନା ହିଁ ପରାସାଧନା । 'ଯାହା ପିଣ୍ଡେ ତାହା ବ୍ରହ୍ମାଣ୍ଡେ' । ଏହି ପିଣ୍ଡ ଶରୀର ହିଁ ବ୍ରହ୍ମାଣ୍ଡର ସୂକ୍ଷ୍ମ ସଂସ୍କରଣ । ଏହାକୁ ନେଇ ହିଁ ବିଶ୍ୱବ୍ରହ୍ମାଣ୍ଡ । ବ୍ରହ୍ମାଣ୍ଡ ଯେପରି ସୃଷ୍ଟି-ସ୍ଥିତି-ସଂହାର ରୂପ ଅବସ୍ଥା ତ୍ରୟାତ୍ମକ, ପିଣ୍ଡାଣ୍ଡ ମଧ୍ୟ ଅନୁରୂପ ଅବସ୍ଥାର ବଶବର୍ତ୍ତୀ । ବ୍ରହ୍ମାଣ୍ଡରେ ଯେପରି ତିନି ଲୋକ, ତିନି ଗୁଣ ଓ ମହତତ୍ତ୍ୱାଦି ତତ୍ତ୍ୱ-ନିଚୟ ବିଦ୍ୟମାନ ପିଣ୍ଡରେ ସେହିପରି ମୂଳାଧାରଠାରୁ ସହସ୍ରାର ମଧ୍ୟରେ ସବୁ ଲୋକ, ସବୁ ଗୁଣ, ସବୁ ତତ୍ତ୍ୱ ଅନ୍ତର୍ନିହିତ । ଏହାର ବିସ୍ତୃତ ବିବରଣୀ ଏଠାରେ

ଦେଇ ପ୍ରାଥମିକ ପାଠକଙ୍କୁ ଖାଲାଳ କରିବା ଉଚିତ ମନେକରୁ ନାହିଁ । ବାସ୍ତବରେ ଏହା'ର ବିସ୍ତର ବାକି ରହିଲା । ଖାଲି ଏତିକି କହୁଛୁ—

ତ୍ରିପୁରେଶୀ ମହାଯନ୍ତ୍ରଂ ପିଣ୍ଡାଣ୍ଡାତ୍ମକମୀଶ୍ୱର ।
ଯୋ ଜାନାତି ସ ଯୋଗୀନ୍ଦ୍ରଃ ସ ଶମ୍ଭୁଃ ସ ହରିର୍ବିଧିଃ ॥

'ଶ୍ରୀଚକ୍ରଂ ଶିବୟୋର୍ବପୁଃ' । କାମେଶ୍ୱର ଶିବ ଓ କାମେଶୀ ଦେବୀ ଲଳିତାଙ୍କ ସନାତନ ମିଳନ ବିନ୍ଦୁକୁ ନେଇ ଶ୍ରୀଚକ୍ର । ଏଥିରେ ଊର୍ଦ୍ଧ୍ୱମୁଖୀ ଚାରି ଶିବ ତ୍ରିଭୁଜ ସହ ଅଧୋମୁଖୀ ପଞ୍ଚ ଶକ୍ତି ତ୍ରିକୋଣରେ ରହସ୍ୟମୟ ମନୋଜ୍ଞ ମିଳନ ହୋଇଛି । ତେଣୁ ବ୍ରହ୍ମାଣ୍ଡ ପୁରାଣରେ କୁହାଯାଇଛି—

ଚତୁର୍ଭିଃ ଶିବଚକ୍ରୈଶ୍ଚ ଶକ୍ତିଚକ୍ରୈଶ୍ଚ ପଞ୍ଚଭିଃ ।
ନବଚକ୍ରୈଶ୍ଚ ସଂସିଦ୍ଧଂ ଶ୍ରୀଚକ୍ରଂ ଶିବୟୋର୍ବପୁଃ ॥
ତ୍ରିକୋଣମଷ୍ଟକୋଣଂ ଚ ଦଶକୋଣଦ୍ୱୟଂ ତଥା ।
ଚତୁର୍ଦ୍ଦଶାରଂ ଚୈତାନି ଶକ୍ତି ଚକ୍ରାଣି ପଞ୍ଚ ଚ ।
ବିନ୍ଦୁଶ୍ଚାଷ୍ଟଦଳଂ ପଦ୍ମଂ ପଦ୍ମଂ ଷୋଡଶ ପତ୍ରକମ୍ ।
ଚତୁରସ୍ରଂ ଚ ଚତ୍ୱାରି ଶିବଚକ୍ରାଣ୍ୟନୁକ୍ରମାତ୍ ॥
ତ୍ରିକୋଣେ ବୈନ୍ଦବଂ ଶ୍ଳିଷ୍ଟମଷ୍ଟାରେଽଷ୍ଟଦଳାମ୍ବୁଜମ୍ ।
ଦଶାରୟୋଃ ଷୋଡଶାରଂ ଭୂଗୃହଂ ଭୁବନାସ୍ରକେ ॥

ଉପରେ ଅନ୍ୟପ୍ରକାରେ କେଉଁଗୁଡିକ ଶିବଚକ୍ର ଓ କେଉଁଗୁଡିକ ଏବଂ ସେମାନେ କପରି ପରସ୍ପର ଶ୍ଳିଷ୍ଟ ହୋଇ ଶିବଶକ୍ତିଙ୍କର ଯୁଗଳ ଯନ୍ତ୍ରବିଗ୍ରହ ଶ୍ରୀଚକ୍ର ଗଠନ କରିଛନ୍ତି କୁହାଯାଇଛି—

ଶୈବାନାମପି ଶାକ୍ତାନାଂ ଚକ୍ରାଣାଂ ଚ ପରସ୍ପରମ୍ ।
ଅବିନାଭାବସମ୍ବନ୍ଧଂ ଯୋ ଜାନାତି ସ ଚକ୍ରବିତ୍ ॥
ତ୍ରିକୋଣରୂପିଣୀ ଶକ୍ତିଃ ବିନ୍ଦୁରୂପଃ ପରଃ ଶିବଃ ।
ଅବିନାଭାବସମ୍ବନ୍ଧସ୍ତସ୍ମାଦ୍ ବିନ୍ଦୁ ତ୍ରିକୋଣୟୋଃ ॥

ଏହି ଚକ୍ରର ରହସ୍ୟ ଗୁରୁକୃପା ବିନା ସହଜବୋଧ ନୁହେ । ଅନେକ ଜନ୍ମର ସଞ୍ଚିତ ସୁକୃତ ଥିଲେ ଓ ଆଗକୁ ଉତ୍ତରୋତ୍ତର ଉନ୍ନତ ହେବାକୁ ଥିଲେ—ଏହାର ରହସ୍ୟ ଜ୍ଞାନ ସମ୍ଭବ ହୁଏ । ତେଣୁ କୁହାଯାଇଛି—

ଶ୍ରେୟଃ ପରମ୍ପରା ଯସ୍ୟ ଭାବିନୀ ଭୈରବୋତ୍ତରମ୍ ।
ତେନୈବ ଲଭ୍ୟତେ ଚୈତତ୍ ପଶ୍ଚାଚ୍ଛ୍ରେୟଃ ପରୀକ୍ଷଯେତ୍ ॥

ଶିବଶକ୍ତୈ୍ୟକ୍ୟରୂପିଣୀ ଏହି ମହାଦେବୀଙ୍କ ଯନ୍ତ୍ରରୂପ ବିଶ୍ୱବିଗ୍ରହ ଶ୍ରୀଚକ୍ର ହେଉଛି ଅହନ୍ତା—ଇଦନ୍ତାର ବୀଜ ଓ ଅନ୍ୟୋନ୍ୟାଭାବସମ୍ବନ୍ଧିତ, ଅବିଭାଗ-ରସାତ୍ମକ । ତେଣୁ 'ସୁଭଗୋଦୟବାସନା'ରେ କୁହାଯାଇଛି—

ଅହନ୍ତେଦନ୍ତୟୋର୍ବୀଜମବିଭାଗରସାତ୍ମକମ୍ ।
ଶିବଶକ୍ତିମୟଂ ଚକ୍ରଂ ବିଶ୍ୱାକାରଂ ଭଜାମ୍ୟହମ୍ ॥

ଶ୍ରୀଚକ୍ର ଦର୍ଶନ ଅନନ୍ତ ପୁଣ୍ୟର ଫଳବଶତଃ ସମ୍ଭବ ହୋଇଥାଏ । ବିଧିବଦ୍ଧ ଭାବରେ ଶହେ ଯଜ୍ଞ ଭଲରୂପେ କଲେ ଯେଉଁ ଫଳ, ଭକ୍ତିର ସହିତ ଶ୍ରୀଚକ୍ର ଦର୍ଶନ କଲେ ସେହି ଫଳ ମିଳିଥାଏ । ତୁଳାପୁରୁଷ-ହିରଣ୍ୟଗର୍ଭ-ବ୍ରହ୍ମାଣ୍ଡ କଳ୍ପପାଦପ-ଗୋସହସ୍ର- ହିରଣ୍ୟକାମଧେନୁ - ହିରଣ୍ୟାଶ୍ୱ - ପଞ୍ଚଲାଙ୍ଗଲ-ଧରା-ହିରଣ୍ୟାଶ୍ୱରଥ-ହେମହସ୍ତୀରଥ-ବିଷ୍ଣୁଚକ୍ର-କଳ୍ପଲତା-ସପ୍ତସାଗର - ରତ୍ନଧେନୁ-ମହାଭୂତ ଘଟପ୍ରଭୃତି ଷୋଡ଼ଶ ମହାଦାନ କଲେ ଯେଉଁ ଫଳ କେବଳ ଶ୍ରୀଚକ୍ର ଦର୍ଶନ କଲେ ସେଇ ଫଳ ମିଳେ । ସାଢ଼େ ତିନକୋଟି ତୀର୍ଥରେ ସ୍ନାନ କଲେ ଯେଉଁ ଫଳ ମିଳେ କେବଳ ଶ୍ରୀଚକ୍ର ଦର୍ଶନରେ ସେହି ଫଳ ମିଳେ । ତେଣୁ ଯାମଳ ଗ୍ରନ୍ଥରେ ଉଲ୍ଲେଖ ଅଛି—

ସମ୍ୟକ୍ ଶତକ୍ରତୂନ୍ କୃତ୍ୱା ଯତ୍ଫଳଂ ସମବାପ୍ନୁୟାତ୍ ।
ତତ୍ଫଳଂ ଲଭତେ ଭକ୍ତ୍ୟା କୃତ୍ୱା ଶ୍ରୀଚକ୍ରଦର୍ଶନମ୍ ॥
ମହାଷୋଡଶ ଦାନାନି କୃତ୍ୱା ଯଲ୍ଲଭତେ ଫଳମ୍ ।
ତତ୍ଫଳଂ ସମବାପ୍ନୋତି କୃତ୍ୱା ଶ୍ରୀଚକ୍ରଦର୍ଶନମ୍ ॥

ସାର୍ଦ୍ଧ ତ୍ରିକୋଟିତୀର୍ଥେଷୁ ସ୍ନାତ୍ୱା ଯତ୍ଫଲମଶ୍ନୁତେ ।
ତତ୍ଫଲଂ ଲଭତେ ଭକ୍ତ୍ୟା କୃତ୍ୱା ଶ୍ରୀଚକ୍ରଦର୍ଶନମ୍ ॥

ତେଣୁ ସବୁଦିନେ ସକାଳେ ନିଦରୁ ଉଠିବାମାତ୍ରେ ପ୍ରଥମେ ଶ୍ରୀଚକ୍ର ବାହାରେ ଦର୍ଶନ କରନ୍ତୁ । ନମଶଃ ତତ୍ତ୍ୱବୋଧ ପରେ ଅନ୍ତର୍ଦ୍ଦର୍ଶନ ହେବ । ନରଜନ୍ମ ସାର୍ଥକ ହେବ ।

## ଶ୍ରୀଲଲିତାସହସ୍ରନାମ :

'ମୁଖଂ ସାହସ୍ରକଂ ସ୍ମୃତଂ' -ସହସ୍ରନାମ ଦେବଦେବୀଙ୍କ ମୁଖ ସଦୃଶ ହେତୁ ପୂଜାରେ ଏହାର ପ୍ରାଧାନ୍ୟ ସ୍ୱୀକୃତ । ଶ୍ରୀଲଲିତା ସହସ୍ର ନାମ ବ୍ୟାସ-ଦେବଙ୍କ ରଚନା ବ୍ରହ୍ମାଣ୍ଡପୁରାଣାନ୍ତର୍ଗତ ରହସ୍ୟସମସ୍ତ ଦିବ୍ୟ ସହସ୍ର ନାମ । ଏହା ମହାଶକ୍ତି ଲଳିତା ପରମେଶ୍ୱରୀଙ୍କ ନିର୍ଦ୍ଦେଶରେ ଶ୍ରୀଚକ୍ରର ସର୍ବରୋଗହର ଚକ୍ର ନାମକ ସପ୍ତମାବରଣ ଅଷ୍ଟାରରେ ଅବସ୍ଥିତ ବାଗ୍‌ଦେବୀ ବଶିନ୍ୟାଦି ରହସ୍ୟଯୋଗିନୀଙ୍କ କର୍ତ୍ତୃକ କଥିତ ହୋଇଥିବାରୁ 'ରହସ୍ୟ ସହସ୍ର ନାମ' । ଏହା ମନୁଷ୍ୟର ଆଧି ବ୍ୟାଧିନାଶକ ସର୍ବରୋଗହର ସହସ୍ରନାମ ।

ମହାଭାରତ ଅନୁଶାସନ ପର୍ବରେ ଯୁଧିଷ୍ଠିରଙ୍କ ଉଦ୍ଦେଶ୍ୟରେ ଭୀଷ୍ମଙ୍କ କଥିତ ବିଷ୍ଣୁ ସହସ୍ରନାମ ଅଷ୍ଟାଦଶ ପୁରାଣାନ୍ତର୍ଗତ ନୁହେଁ ।'ଲଲିତା ସହସ୍ର ନାମ' କିନ୍ତୁ ଅଷ୍ଟାଦଶପୁରାଣାନ୍ତର୍ଗତ ବ୍ରହ୍ମାଣ୍ଡପୁରାଣର ଅନ୍ତର୍ବର୍ତ୍ତୀ । ବିଷ୍ଣୁ ସହସ୍ରନାମ ନରଶାର୍ଦ୍ଦୁଳ ମହାବୀର ଭୀଷ୍ମଙ୍କ କର୍ତ୍ତୃକ କଥିତ ହେତୁ ମାନନୀୟ । ଲଲିତା-ସହସ୍ରନାମ କିନ୍ତୁ ମହାଦେବୀ ଲଲିତାଙ୍କ ଚକ୍ରରହସ୍ୟଜ୍ଞା ବଶିନ୍ୟାଦି ଅଷ୍ଟବାଗ୍‌-ଦେବୀଙ୍କ କର୍ତ୍ତୃକ କଥିତ ଏବଂ ତାହା ପୁଣି ବିଷ୍ଣୁଙ୍କ ଅବତାର ପ୍ରଭୁ ହୟଗ୍ରୀବଙ୍କ ମୁଖରୁ ଶ୍ରୀବିଦ୍ୟା ଉପାସକ ଅଗସ୍ତ୍ୟଙ୍କ ଉଦ୍ଦେଶ୍ୟରେ ଅନୁନିଃସୃତ ହୋଇଥିବାରୁ ଦିବ୍ୟ । ବିଷ୍ଣୁ ସହସ୍ରନାମରେ ଶ୍ରୀମାନ୍ ଓ ପ୍ରାଣଦ ପ୍ରଭୃତି ଶବ୍ଦ ଚତୁରାବୃତ୍ତି, ବିଷ୍ଣୁ ପ୍ରଭୃତି ଶବ୍ଦ ତ୍ରିରାବୃତ୍ତି ଓ ଅନେକଶବ୍ଦ ଦ୍ୱିରାବୃତ୍ତି ହୋଇଥିବାରୁ ପୁନରାବୃତ୍ତିମସ୍ତ ନାମାବଳୀକୁ ଗୋଟିଏ ଗୋଟିଏ ହିସାବ କଲେ ମୋଟ ନାମ ସଂଖ୍ୟା ୮୯୦ (ଆଠଶହ ନବେ) ହେଉଛି । ଏହିପରି ଅନ୍ୟାନ୍ୟ ସହସ୍ର

ନାମରେ ମଧ୍ୟ ଗୋଟିଏ ଗୋଟିଏ ନାମର ଏକାଧିକ ଉଲ୍ଲେଖ ରହିଛି । ଲଳିତା ସହସ୍ରନାମ ଦିବ୍ୟ ହେତୁ ଏଥିରେ ପୁନରାବୃତ୍ତି ନାହିଁ । ପୁଣି ଅନ୍ୟାନ୍ୟ ସହସ୍ରନାମ ମାନ ଏକହଜାର ନାମର କ୍ରମହୀନ ଯାନ୍ତ୍ରିକ ସଂକଳନ । ଲଳିତା ସହସ୍ରନାମ କିନ୍ତୁ ତାତ୍ପର୍ଯ୍ୟପୂର୍ଣ୍ଣ ଭାବରେ କ୍ରମଯୁକ୍ତ ସହସ୍ରନାମ । ଏଥିରେ ନାମ କୀର୍ତ୍ତନ ସହ ଏକ ତତ୍ତ୍ୱାଖ୍ୟାନ, ଏକ ନିର୍ଦ୍ଦିଷ୍ଟ ଦର୍ଶନ ଓ ଯୋଗ ମାର୍ଗରେ ଚକ୍ରମାନଙ୍କର ଅବସ୍ଥାନ ଅନୁରୂପ ସାଧନ ପ୍ରକ୍ରିୟା ବର୍ଣ୍ଣିତ ହୋଇଛି । ମୂଳାଧାରରୁ ସହସ୍ରାନ୍ତ ଚକ୍ରମାନଙ୍କର ଏକ କ୍ରମ ରହିଛି । ତେଣୁ ଲଳିତା ସହସ୍ରନାମରେ ନାମଗୁଡ଼ିକର କ୍ରମିକତା ଅଛି ।

ଶ୍ରୀମାତା ଶ୍ରୀଲଳିତାଙ୍କ ଆବିର୍ଭାବ, ସ୍ଥୂଳସ୍ୱରୂପ, ଭଣ୍ଡାସୁର ଜନ୍ମ ପ୍ରଭୃତି ପ୍ରଥମ ୫୪ଟି ନାମ ମଧ୍ୟରେ ସୂଚିତ ହୋଇଛି । ତା'ପରେ ୮୫ ସଂଖ୍ୟକ ନାମ ଠାରୁ ଶ୍ରୀଲଳିତାଙ୍କର ସୂକ୍ଷ୍ମସ୍ୱରୂପ ଓ ମନ୍ତ୍ରସ୍ୱରୂପ ବର୍ଣ୍ଣିତ ହୋଇଛି । ତା'ପରେ ନାମ ସଂଖ୍ୟା ୯୯ରୁ ୧୦୮ ମଧ୍ୟରେ ଗ୍ରନ୍ଥିଭେଦ ଓ କୁଣ୍ଡଳିନୀ ଯୋଗର ବର୍ଣ୍ଣନା ହୋଇଛି । ତା'ପରେ ବ୍ରହ୍ମଶକ୍ତି ଶ୍ରୀଲଳିତା ମାତାଙ୍କର ନିର୍ଗୁଣ ସ୍ୱଭାବ ନାମ ସଂଖ୍ୟା ୧୩୧ରୁ ୧୯୦ ମଧ୍ୟରେ କୁହାଯାଇଛି । ନାମ ସଂଖ୍ୟା ୨୧୫ରୁ ୨୨୫ ମଧ୍ୟରେ ଶ୍ରୀଦୁର୍ଗା ସପ୍ତଶତୀର ତେର ଅଧ୍ୟାୟର ଦେବୀମାନଙ୍କ ନାମୋଲ୍ଲେଖ ଏବଂ ଶେଷରେ ମହାଯୋଗେଶ୍ୱରେଶ୍ୱରୀ ଶବ୍ଦରେ ଗୀତାଶାସ୍ତ୍ରର ପ୍ରବକ୍ତା ମହାଯୋଗେଶ୍ୱର ଭଗବାନ୍ ଶ୍ରୀକୃଷ୍ଣ ଓ ଲଳିତା ରହସ୍ୟ ସହସ୍ରନାମର ମହାଦେବୀ ମହାଯୋଗେଶ୍ୱରୀ ଲଳିତାଙ୍କ ଉଲ୍ଲେଖ ଉଭୟଙ୍କ ଅଭିନ୍ନତାର ସୂଚକ । ଶ୍ରୀବିଦ୍ୟା ସାଧନ ପରମ୍ପରାରେ ଏହା 'ଶ୍ରୀ ରାଜଗୋପାଳ ସୁନ୍ଦରୀ ବିଦ୍ୟା' ଭାବରେ ପ୍ରସିଦ୍ଧ । ନାମ ସଂଖ୍ୟା ୪୭୫ରୁ ୫୩୪ ମଧ୍ୟରେ ବିଶୁଦ୍ଧି, ଅନାହତ, ମଣିପୂର, ସ୍ୱାଧିଷ୍ଠାନ, ମୂଳାଧାର ତଥା ଆଜ୍ଞା ଓ ସହସ୍ରାରରେ ଦେବୀଙ୍କ ସ୍ୱଶକ୍ତି ଓ ସେମାନଙ୍କ ନାମ ଧାମ ସହ କେଉଁ ରଙ୍ଗରେ କେଉଁ ରୂପରେ କେଉଁ ଆୟୁଧ ଧରି କିଏ କିପରି ପ୍ରକାଶ ପାଆନ୍ତି ତାହାର ଅପୂର୍ବ ଧ୍ୟାନ ଓ ମନନ ଦେଖିବାକୁ ମିଳେ । ଅନ୍ତର୍ଯୋଗ-ପ୍ରବୀଣ ଶ୍ରୀବିଦ୍ୟା ସାଧକମାନଙ୍କର ଏହା ଅତ୍ୟନ୍ତ ରହସ୍ୟାତିରହସ୍ୟ ଅନୁଭବ-ବେଦ୍ୟ ପ୍ରକ୍ରିୟା । ସୌନ୍ଦର୍ଯ୍ୟଲହରୀର ଶ୍ଳୋକ ୩୬ରୁ ୪୧ ମଧ୍ୟରେ ତଥା ସୁଭଗୋଦୟ ସ୍ତବରେ ଏହାର ହିଁ ଭବ୍ୟ ବର୍ଣ୍ଣନା ଦୃଷ୍ଟିଗୋଚର ହୁଏ ।

ତା'ପରେ ନାମାବଳି ମଧ୍ୟରେ ଶ୍ରୀବିଦ୍ୟାକ୍ରମର ଅନେକ ମନ୍ତ୍ର, ଅନେକ ତତ୍ତ୍ୱ ଓ ବହୁ ରହସ୍ୟ ଅତି ସଂକ୍ଷିପ୍ତାକାରରେ ଗୁମ୍ଫିତ ହୋଇ ରହିଛି ।

ଆସନ୍ତୁ ସମସ୍ତେ 'ଶ୍ରୀଲଳିତାସହସ୍ରନାମ' ନିତ୍ୟକର୍ମରୂପେ ପାଠକରି କୃତାର୍ଥ ହେବା ପରିବେଶକୁ ସୃଷ୍ଟି କରିବା ।

ଲଳିତା ସହସ୍ରନାମର ପ୍ରତ୍ୟେକ ପଦ୍ୟ ସ୍ତୁତିବୋଧକ ସୁଶ୍ଲୋକ କୁହାଯାଏ । କାଞ୍ଚୀର କାମାକ୍ଷୀ ଓ ମଦୁରାଇର ମୀନାକ୍ଷୀ ମନ୍ଦିରରେ ସହସ୍ରନାମ ଦ୍ୱାରା ହିଁ ଅର୍ଚ୍ଚନା କରାଯାଏ । ମୋର ଗୁରୁପୀଠ ମଣିକାଗିରି ଚନ୍ଦୁଲଗୋଇମାଳାଇର ଶ୍ରୀପୀଠରେ ମହାସମାବେଶରେ ମହାମେରୁ ଶ୍ରୀଚକ୍ରରାଜଙ୍କର ନବାବରଣ ପୂଜା ପରେ ଅକ୍ଷମାଳାକ୍ରମରେ ମନ୍ତ୍ରରାଜ ଜପ ଓ ତା'ପରେ ସହସ୍ରନାମାର୍ଚ୍ଚନା ପ୍ରଭୃତି କରାଯାଇଥାଏ । ନାମ ଓ ନାମୀ ଅଭିନ୍ନ । ଅନେକ ସ୍ଥଳରେ ନାମୀ ଅପେକ୍ଷା ନାମର ମହିମା ଅଧିକ । ମହାରାଣୀ ସତ୍ୟଭାମା ତୁଳାପୁରୁଷଦାନ ପାଇଁ ସୁନାରେ ଭଗବାନ କୃଷ୍ଣଙ୍କୁ ଓଜନ କରି ପାରି ନ ଥିଲେ । ଭଗବତୀ ରୁକ୍ମିଣୀ ଯାଇ ତୁଳସୀ ପତ୍ରଟିରେ କୃଷ୍ଣ ନାମ ଲେଖି ସୁନାଗଦା ଉପରେ ରଖିବା ପରେ କୃଷ୍ଣଙ୍କ ଗୁରୁତା ଲଘବ ହେଲା । ନାମ ପ୍ରଭାବରେ ଭକ୍ତ ହନୁମାନ୍ ସମୁଦ୍ର ପାର ହୋଇ ପାରିଥିଲେ; କିନ୍ତୁ ନାମୀ ଶ୍ରୀରାମଙ୍କୁ ସମୁଦ୍ର ପାର ହେବା ସକାଶେ ସେତୁବନ୍ଧଟିଏ କରିବା ଆବଶ୍ୟକ ହେଲା ।

ଭଗବତୀ ଲଳିତା 'ନାମ ପାରାୟଣ ପ୍ରୀତା' । ତାଙ୍କ ଲଳିତ ନାମର କୀର୍ତ୍ତନ ଓ ତା'ର ପ୍ରଭାବ କେବଳ 'ଜାଣେ ଅନୁଭବୀ ଅନୁଭବରେ' । ଏହି ସହସ୍ର ନାମ ଉପରେ ବିମର୍ଶାନନ୍ଦନାଥ, ବିଦ୍ୟାରଣ୍ୟ ଓ ଭଟ୍ଟନାରାୟଣ ପ୍ରଭୃତିଙ୍କ ସଂସ୍କୃତବ୍ୟାଖ୍ୟା ଥିଲେ ମଧ୍ୟ ଭାସ୍କରରାୟଙ୍କ କୃତ 'ସୌଭାଗ୍ୟଭାସ୍କର ଭାଷ୍ୟ' ଆଗମ ଶାସ୍ତ୍ରରେ ଅନ୍ୟତମ ପ୍ରସ୍ଥାନତ୍ରୟୀର ଗୌରବ ଅର୍ଜନ କରିଛି, ଭାସ୍କର ରାୟ ସେତେବେଳେ ବାରାଣସୀରେ ଦେବୀଦେବୀ କୃପାବଳରେ କୁଙ୍କୁମାନନ୍ଦ ସରସ୍ୱତୀଙ୍କ ସମକ୍ଷରେ ଚଉଷଠି କୋଟି ଯୋଗିନୀଙ୍କ ଧ୍ୟାନ ଅନର୍ଗଳ ଭାବରେ ବର୍ଣ୍ଣନାକରି ସମସ୍ତଙ୍କୁ ଚକିତ କରିଦେଇ ଥିଲେ ଏବଂ ନିଜର ମନ୍ତ୍ରଶକ୍ତି

କାଳରେ କାବେରୀ ନଦୀର ଗତିପଥ ବଦଳାଇ ଗ୍ରୁପ୍ତାପୀଠର ଆଶ୍ରମ ନିକଟକୁ ଆଣିପାରିଥିଲେ । ରାଜେଶ୍ୱରୀଙ୍କ ପାଇଁ ମୁକୁଟ ଓ ରତ୍ନହାର ପ୍ରଭୃତି ଏବଂ ଚଉଷଠି ଉପଚାରରେ ସୁବର୍ଣ୍ଣପୁଷ୍ପ ଦକ୍ଷିଣା ସକାଶେ ଆବଶ୍ୟକ ସୁନାର ପଦ୍ମ-ଫୁଲ ତିଆରି କରିବା ପାଇଁ ସେ କିଛି ଅର୍ଥ ମହାଜନଠାରୁ ଧାର କରି ଶୁଝି-ପାରି ନ ଥିଲେ । ଦିନେ ସହସ୍ରନାମର 'ଅପର୍ଣ୍ଣାୟୈ ନମଃ' କହି ଅର୍ଚ୍ଚନା କରୁଥିଲା ବେଳେ ମହାଜନ ଆସି ଋଣ ପରିଶୋଧ କରିବା ସକାଶେ ଭାସ୍କର ରାୟଙ୍କୁ ତାଗିଦା କରିଦେଲା । ତପସ୍ୟାରତା ପାର୍ବତୀ ସବୁଗଛରୁ ଝଡ଼ୁଥିବା ସାମାନ୍ୟ ପର୍ଣ୍ଣ ବା ପତ୍ର ଖାଇ ଜୀବନ ରକ୍ଷା କରିଥିଲେ । ତାହା ମଧ୍ୟ ଛାଡି-ଦେବାରୁ ତାଙ୍କର ନାମ ଅପର୍ଣ୍ଣା ହେଲା ବୋଲି କାଳିଦାସ କୁମାରସମ୍ଭବ (୫।୨୮) କାବ୍ୟରେ କହିଗଲେ । ଏଠାରେ ସିଦ୍ଧସାଧକ ଭାସ୍କର ରାୟ ମହା-ଜନର ତାଡନାରେ ଅପର୍ଣ୍ଣାନାମକୁ ଭାବଗର୍ଭିତ କରି କହିଲେ—

ଋଣମୀଷ୍ଟମଦତ୍ତ୍ୱା ହି ତ୍ୱନ୍ନାମ ଜପତୋ ମମ ।
ଶିବେ କଥମପର୍ଣ୍ଣେତି ରୂଢ଼ିସ୍ତେ'ସ୍ତ୍ୱେତେ ନ ତେ ।।

ହେ ମା ! ତୁମେ ସବୁ ଋଣ ପରିଶୋଧ କରି ଦେଉଥିବାରୁ (ଅପଗତଂ ଋଣଂ ଯସ୍ୟା ସା = ଅପ + ଋଣ) ତୁମ ନାଁ ଅପର୍ଣ୍ଣା । ତୁମ ନାମ ଜପୁଥିବା ମୁଁ କିଛି ଋଣ କରିଥିଲି ତୁମ ପାଇଁ । ହେ ମଙ୍ଗଳମୟି, ତୁମେ ତାହା ନ ଶୁଝି ପ୍ରସିଦ୍ଧ 'ଅପର୍ଣ୍ଣା' ନାମଧାରଣ ତୁମ ପାଇଁ ଦୋଷ (ବା ଭାର) ହେଉ ନାହିଁକି ?

ଭାବଗଳିତ ହୃଦୟର ଏହି ଅଭିବ୍ୟକ୍ତିରେ ମା'ଙ୍କ ସିଂହାସନ ଟହଲି-ଗଲା । ମହାଜନର ସ୍ତ୍ରୀ ଧାଇଁ ଆସି ମହାଜନକୁ ଖବର ଦେଲା—ଭାସ୍କର ସ୍ୱାମୀଙ୍କ ସ୍ତ୍ରୀ ଆସି ଟଙ୍କା ଦେଇଗଲେଣି । ତୁମେ ଏଠାକୁ କାହିଁକି ଆସିଚ ? ପରିସ୍ଥିତି ଓ ପରିବେଶ ସଙ୍ଗେ ସଙ୍ଗେ ବଦଳି ଗଲା । ଭାସ୍କର ରାୟଙ୍କ ସହ ସବୁ ଧାଇଁଲେ ମା'ଙ୍କ ଦର୍ଶନ ପାଇଁ । କିନ୍ତୁ ସେ ଯେ ଭାବଗମ୍ୟା ଭାବମୂର୍ତ୍ତି ।

ଆଜିମଧ୍ୟ ସେସବୁ ଅଳଂକାର ଗ୍ରୁପ୍ତାପୀଠରେ ତ୍ରିତ ପୂର୍ତ୍ତିମାଧ୍ୱକ ସାଧାରଣଙ୍କ ଦର୍ଶନାର୍ଥେ ଚତୁଃଷଷ୍ଟି ଉପଚାରରେ ପୂଜାବେଳେ ବ୍ୟବହାର ହୁଏ ।

ଭକ୍ତର ସଦ୍ଧୃତ ମନ ବୁଦ୍ଧି ଅର୍ପଣକରି (ଗୀତା ୧୨। ୧୪) ତାଙ୍କର ନାମ ଜପ ଓ ତଦର୍ଥ ଭାବନା (ପାତଞ୍ଜଳଯୋଗ ୧।୧୮) କଲେ ସାଧକ ତାଙ୍କର ପ୍ରିୟ ଭକ୍ତ (ଗୀତା ୧୨।୧୪) ହେବ ଏବଂ ତା'ର ସକଳ ବିଘ୍ନ ଦୂର (ପାତଞ୍ଜଳ ଯୋଗ ୧। ୨୯) ହୋଇ ପରମାତ୍ମଦର୍ଶନ ସମ୍ଭବ ହେବ । ଅହରହ ତାଙ୍କର ନାମକୀର୍ତ୍ତନ ଓ ତଦର୍ଥ ଚିନ୍ତନରେ ହୃଦୟକୁ ବିଗଳିତ କଲେ ହିଁ ଜୀବନରେ ସିଦ୍ଧି ଓ ସାର୍ଥକତା ଆସିବ ।

ଜପ ଉପାଂଶୁ ବା ମାନସ କରାଯିବା ଉଚିତ । ସ୍ତୋତ୍ରପାଠ କିନ୍ତୁ ବାଚିକ କରାଯିବ ଏବଂ ନାମ.ବାଳୀ ପାଠବେଳେ ଚତୁର୍ଥ୍ୟନ୍ତ ନାମ ଶେଷରେ ନମଃ' ଶବ୍ଦ ରହିବ—'ନମୋଽନ୍ତଂ ଚ ପଠେତ୍ ସ୍ତୋତ୍ରଂ ବାଚିକଂ ତୁ ପ୍ରଶସ୍ୟତେ '। ଏହି ସହସ୍ର ନାମ ନିଷ୍କାମଭାବରେ ଦେବତାଙ୍କ ପ୍ରୀତ୍ୟର୍ଥେ ତ୍ରିସନ୍ଧ୍ୟାରେ ନିତ୍ୟ ପାଠକଲେ ଅତ୍ୟନ୍ତ ପୁଣ୍ୟ ଲାଭହୁଏ ଓ ତା'ର ଦୁର୍ଲଭ ହୋଇ କିଛି ରହେ ନାହିଁ । ପୂର୍ଣ୍ଣାଭିଷିକ୍ତ ସାଧକ ତୁରୀୟ ସନ୍ଧ୍ୟାରେ ଏହାର ବିଶେଷ ପ୍ରୟୋଗ କରିଥାଆନ୍ତି ।

ନୈମିତ୍ତିକ ବା ସକାମ ପାଠକଲେ ନିର୍ଦ୍ଦିଷ୍ଟସଂଖ୍ୟକ ଆବୃତ୍ତି ଯଥା-ବିଧି ଗୁରୂପଦିଷ୍ଟମାର୍ଗରେ କରିବାକୁ ହେବ । ସ୍ତୋତ୍ର ବା ନାମାବଳୀ ପାଠପରେ ସମର୍ପଣ ଓ ଫଳାଶ୍ରୁତି ପାଠକରିବା ବିଧି ରହିଛି । ସମୟ ଅଭାବରେ ଫଳଶ୍ରୁତିର ଦୁଇ ଚାରି ଶ୍ଳୋକ ଅନ୍ତତଃ ପଢ଼ିବା ଉଚିତ । ଯେଉଁମାନେ ଦୀକ୍ଷିତ ସେମାନେ ଅଭୀଷ୍ଟ ମନ୍ତ୍ର ଉପାଂଶୁ ଜପ ପରେ ବାଚିକ'ପ୍ରଣବ' ପୂର୍ବକ ଚତୁର୍ଥ୍ୟନ୍ତ ନାମାବଳୀ ପଛରେ 'ନମଃ' ଯୋଗକରି ଅର୍ଚ୍ଚନା କରିବେ । ବିଧିବଦ୍ଧ ପୁରଶ୍ଚରଣ କରିଥିଲେ ଏହି ସ୍ତୋତ୍ର ଦ୍ୱାରା ଅସାଧ୍ୟ ସାଧନ କରିହେବ । ସଂକ୍ରାନ୍ତି, ପୂର୍ଣ୍ଣିମା, ଶୁକ୍ଳ ନବମୀ, ଶୁକ୍ଳଚତୁର୍ଦ୍ଦଶୀ, ଶୁକ୍ରବାର, ତ୍ରିଜନ୍ମଅର୍ଥାତ୍ ଜନ୍ମ ବାର, ଜନ୍ମ ତିଥି ଓ ଜନ୍ମ ନକ୍ଷତ୍ରରେ ରୋଗ ନାଶ ଓ ଦୀର୍ଘାୟୁଷ ପାଇଁ ଏହି ସ୍ତୋତ୍ର ଅବଶ୍ୟ ପଠନୀୟ ।

ବାରମ୍ବାର ପାଠ ଓ ମନନ ପରେ ଏହାର ପ୍ରତିନାମର ଅର୍ଥଗାମ୍ଭୀର୍ଯ୍ୟ ପାଠକ ହୃଦୟକୁ ଅଭିଭୂତ କରିବ । ସଂପଦ୍-ସରସ୍ୱତୀ

ମହାଦେବୀ ଲଳିତାଙ୍କ ସହସ୍ର ନାମ ପାଠକଲେ ଲକ୍ଷ୍ମୀଙ୍କ ଅସୀମ କୃପାଲାଭ ହୁଏ । ତା'ର କୃପାବଳରେ ବିଜୟନଗର ସାମ୍ରାଜ୍ୟ ପ୍ରତିଷ୍ଠା କରିଗଲେ ମନ୍ତ୍ର-ଶକ୍ତିବଳରେ ବିଦ୍ୟାରଣ୍ୟ । ହେଇ ଆମ ଦେଖା କଥା—ସନ୍ନ୍ୟାସୀ କରପାତ୍ରୀ ତା'ର କୃପାବଳରେ ଅନନ୍ତ ଐଶ୍ୱର୍ଯ୍ୟ ଓ ଅଖଣ୍ଡ ପାଣ୍ଡିତ୍ୟର ଅଧିକାରୀ ହୋଇପାରିଥିଲେ । ତାଙ୍କ ସଂକଳିତ 'ଶ୍ରୀବିଦ୍ୟାରତ୍ନାକର'—ଏ ବିଷୟରେ ଏକ ଅମୂଲ୍ୟ ଗ୍ରନ୍ଥରତ୍ନ । ଆଜିମଧ୍ୟ ହିମାଚଳ ଘୂରିବୁଲିଚି—ସାଧୁ ସନ୍ନ୍ୟାସୀ ଓ ବିଚକ୍ଷଣ ପଣ୍ଡିତଙ୍କୁ ଖୋଜି ମିଳିଚି । ତାଙ୍କଠୁ ଯାହା ପାଇଚି ତାକୁ ହିଁ ପୁଞ୍ଜି କରି ଚଳୁଚି । ମୋର ବୋଲି କିଛି ନାହିଁ । ଏହି ସହସ୍ରନାମ ବ୍ରହ୍ମାଣ୍ଡପୁରାଣର ବିଷୟ ହେଲେ ହେଁ ରହସ୍ୟ ସହସ୍ର ନାମ ହେତୁ ପଣ୍ଡିତଗଣ ଏହାକୁ ସେଥିରୁ ଅଲଗ କରି ବାନ୍ଧି ରଖିଥିଲେ । ତେଣୁ ଏହାର ପ୍ରକାଶନ, ପାଠ—ସବୁଥିରେ ଅଧିକାରୀର ପ୍ରଶ୍ନ ଜଡିତ । ଫଳରେ ଏଥିରେ ସବୁକଥା ପ୍ରକଟ ନ କଲେ ମଧ୍ୟ କ୍ଲିଷ୍ଟ ଆକାରରେ ଅନେକ କଥା ଦିଆଯାଇଛି—ଗୁରୁଙ୍କ ଆଦେଶ ନେଇ । ସହସ୍ର ନାମର ଭାଷ୍ୟ ସଂକଳିତ ସଂସ୍କରଣ ମୁଦ୍ରଣାଧୀନ ଏବଂ 'ଶ୍ରୀବିଦ୍ୟାଭାଗବତ' ପ୍ରକାଶାପେକ୍ଷାରେ ରହିଛି ।

## ଶେଷରେ ସାଧୁଚିନ୍ତା-

ଯନ୍ମୁଖାମ୍ନାୟମାହାତ୍ମ୍ୟ ବିଦ୍ୟାସିଦ୍ଧିରଭୂନ୍ମମ ।
ମହାତ୍ରିପୁରସୁନ୍ଦର୍ଯ୍ୟାତ୍ମମଦ୍ୱୟଂ ଗୁରୁଂ ଭଜେ ॥

ମୋର ପରମ ପୂଜ୍ୟ ଗୁରୁଦେବ ଗୁସ୍ତାପୀଠାଧୀଶ୍ୱର ଜଗଦ୍‌ଗୁରୁ ୧୦୦୮ ଶ୍ରୀ ଅଦ୍ୱୟାନନ୍ଦନାଥ ସରସ୍ୱତୀଙ୍କର ଏ ଅକିଞ୍ଚନ ଉପରେ ସ୍ନେହାଧିକ୍ୟ-ବଶତଃ ଅଧିକାଧିକ ଆସ୍ଥା ଓ ବିଶ୍ୱାସ ରହିଚି । ତାଙ୍କ ପାଦତଳେ ମୋର କୋଟି କୋଟି ପ୍ରଣାମ । ଶାସ୍ତ୍ର ଅନନ୍ତ, ଆୟୁଷ ଅଳ୍ପ, ବିଘ୍ନ ବହୁତ । ତା'ର କୃପା ନ ଥିଲେ ମନୀଷ କ'ଣ କରିବ ? ଗୁରୁଙ୍କ ଆଦେଶ ଗୀତାର ଶୈବ ଭାଷ୍ୟ ପରି ଶାକ୍ତଭାଷ୍ୟ ରଚନା ଦକାଶେ । ତା'ର ପ୍ରସ୍ତୁତ ପର୍ବ 'ଶ୍ରୀବିଦ୍ୟା ଭାଗବତ' କେବେ ପ୍ରକାଶ ପାଇବ ଜଣା ନାହିଁ । ଲଳିତା ସହସ୍ରନାମର ବିମର୍ଶ (ବିସ୍ତର) ଥିଲେ ମଧ୍ୟ ପ୍ରକାଶ ବିନା ସାର୍ଥକ ହୁଅନ୍ତା ନାହିଁ ।

ଅଶେଷ କଲ୍ୟାଣଭାଜନ ଆୟୁଷ୍ମାନ୍ ଗିରୀଶ ଚନ୍ଦ୍ର ମହାନ୍ତି, ଏମ୍. ଏ., ଏଲ୍. ଏଲ୍. ବି. (ଆଡ୍‌ଭୋକେଟ୍) ଓ ତାଙ୍କର ଧର୍ମପତ୍ନୀ କଲ୍ୟାଣୀୟା ସୁଜାତାଙ୍କ ହୃଦ୍‌ଗତ ଅଭିଳାଷ ଓଡ଼ିଆ ପାଠକଙ୍କୁ ଆଜି ଏହି ଅମୂଲ୍ୟ ସମ୍ପଦ୍ 'ଶ୍ରୀଲଳିତା-ସହସ୍ରନାମ' ଉପହାର ଦେଇଛି। ସେମାନଙ୍କ ଋଦ୍ଧି ଓ ସିଦ୍ଧି ନିଶ୍ଚିତ— ଏଥିରେ ମୁଁ ନିଃସନ୍ଦେହ। ସେମାନଙ୍କ ଇଚ୍ଛା ଏହାର ପୁଣି ଏକ ଭାଷ୍ୟ ସମ୍ବଳିତ ପରିବର୍ଦ୍ଧିତ ସଂସ୍କରଣ କରିବେ। ଭଗବତୀଙ୍କ କରୁଣା କଟାକ୍ଷ କାମନା କରୁଚି।

ମନ୍ଦିର ଗଠନ ପରି ଏକ ସାଧୁକର୍ମକୁ ପ୍ରୋତ୍ସାହିତ କରି ତା ପାଇଁ ଆଗ ସର୍ବାଙ୍ଗ ସୁନ୍ଦର ମନୋହର 'ମୁଖଶାଳା' ତୋଳି ଓ ଦେବୀଙ୍କ ସୁନ୍ଦର ଚିତ୍ର ଯୋଗାଇ ଦେଇ 'ନିସ୍ପୃହ'ର ମୁଖ୍ୟ ସମ୍ପାଦକ ଜ୍ୟୋତିର୍ବିଦ୍ୟା ବାଚସ୍ପତି ପଣ୍ଡିତ ଶ୍ରୀ ରାମଚନ୍ଦ୍ର ହରିଚନ୍ଦନ ଜଗଦ୍‌ଗୁରୁଙ୍କ ସମସ୍ତଙ୍କୁ କୃତଜ୍ଞ କରିଥିବାରୁ ଧନ୍ୟବାଦାର୍ହ। ମା'ଙ୍କ ତିରଙ୍ଗ ବ୍ଲକ୍ ଯୋଗାଇ 'ନିସ୍ପୃହ' ସମ୍ପାଦକ ଶ୍ରୀ ଦୀନକୃଷ୍ଣ ମିଶ୍ର ଓ ଶ୍ରୀଯନ୍ତ୍ର ( ଶୁଦ୍ଧ ବ୍ଲକ୍) ଯୋଗାଇ ଦେଇ ଶ୍ରୀଚକ୍ର ଲେଖାର ଲେଖକ ଶ୍ରୀ ପୂର୍ଣ୍ଣଚନ୍ଦ୍ର ରଥ, ପ୍ରିନ୍‌ସିପାଲ, ରାଉରକେଲା ଲ' କଲେଜ ଧନ୍ୟବାଦର ପାତ୍ର ହୋଇଛନ୍ତି। ମୁଖଶାଳା ଓ ମନ୍ଦିର ମଧ୍ୟରେ ଭୋଗମଣ୍ଡପ ଓ ନାଟମନ୍ଦିର ଥାଏ। ଭୋଗମଣ୍ଡପ ପାଇଁ ଭୋଗ୍ୟ ଶ୍ରୀତତ୍ତ୍ୱ ଓ ନାଟ ମନ୍ଦିରରେ ନର୍ତ୍ତିକଭକ୍ତ କଥା ଲେଖିଥିବାରୁ କବିରାଜ ପଣ୍ଡିତ ବାମଦେବ ଆଚାର୍ଯ୍ୟଙ୍କୁ ଧନ୍ୟବାଦ। ପାଣ୍ଡୁଲିପି ପ୍ରସ୍ତୁତିଠାରୁ ପ୍ରୁଫ୍ ଦେଖିବାର ସକଳ କଷ୍ଟ ସ୍ୱୀକାର କରିଥିବାରୁ ଶ୍ରୀଯୁକ୍ତ ହରେକୃଷ୍ଣ ରଣା-ଙ୍କର ମଙ୍ଗଳ କାମନା କରୁଚି।

ଓଡ଼ିଶାରେ ମହାତ୍ରିପୁରସୁନ୍ଦରୀ ଷୋଡଶୀ ମହାଦେବୀ ଲଳିତାଙ୍କ ଏକ ମନ୍ଦିର ହେଉ—ମୋର ପୂଜ୍ୟ ଗୁରୁଦେବଙ୍କ ସଦିଚ୍ଛା 'ଶ୍ରୀମୁଖ'ରୁ ପ୍ରକାଶ। "ଅନିତ୍ୟଂ ଯୌବନଂ ରୂପଂ, ଜୀବିତଂ ଦ୍ରବ୍ୟସଂଚୟଃ। ଆରୋଗ୍ୟଂ ପ୍ରିୟ ସଂବାସୋ ଗୃଧ୍ୟେତ୍ତେଷୁ ନ ପଣ୍ଡିତଃ॥" —ଏଥିପାଇଁ ଭୁବନେଶ୍ୱରରେ ମୋର ସ୍ୱର୍ଗତ ପିତା ହରିହର ଓ ବୃଦ୍ଧାମାତା ଅନ୍ନପୂର୍ଣ୍ଣାଙ୍କର ସ୍ୱୋପାର୍ଜିତ ସାମାନ୍ୟ ବାସଭୂମି 'ଶ୍ରୀ ଶ୍ରୀ ମହାତ୍ରିପୁରସୁନ୍ଦରୀ ଶ୍ରୀବିଦ୍ୟା ମନ୍ଦିର' ଉଦ୍ଦେଶ୍ୟରେ

ଉତ୍ସର୍ଗ ହୋଇଛି ଏବଂ ଏଥିପାଇଁ ଏକ ଟ୍ରଷ୍ଟ ମଧ ଗଠନ ହେଉଛି । ରାଜ-ରାଜେଶ୍ୱରୀଙ୍କ ଅର୍ଚ୍ଚନା ମନ୍ଦିର କେବେ ହେବ, କିଏ କରିବ—ତା'କୁ ଜଣା । ଏ ସବୁ ମହତ୍ କର୍ମରେ ଶ୍ରୀଯୁକ୍ତ ଶତ୍ରୁଘ୍ନ ପାଢ଼ୀଙ୍କ ସ୍ୱତଃପ୍ରବୃତ୍ତିମୂଳକ ପ୍ରଥମ ଦାନ ଏକ ସହସ୍ର ମୁଦ୍ରା ସ୍ମରଣୀୟ ଓ ମହାର୍ହ ହୋଇ ରହିବ । ଯନ୍ତ୍ର ଓ ମୂର୍ତ୍ତି କାନୁ ଗଢ଼ିଲେଣି ଓଡ଼ିଶାର ଖ୍ୟାତନାମ ସ୍ଥପତି ଖଲ୍ଲିକୋଟ କଳାମହାବିଦ୍ୟାଳୟର ଅବସରପ୍ରାପ୍ତ ଅଧ୍ୟକ୍ଷ ଶ୍ରୀ ବିପ୍ରଚରଣ ମହାନ୍ତି । ସାଧୁ ଅଭିଳାଷ—ନିଶ୍ଚୟ ପୂରଣ ହେବ । ମଣିଷର କ'ଣ ବା ଦରକାର ? କେବଳ ପ୍ରାର୍ଥନା କରୁଛି—

ଆଗେ ଆଗେ ଥାଉ ସେହି ଲଳିତାଙ୍କ ଚରଣ ପଦ୍ମରେ ଥିବା ଲଳିତ ବସ୍ତୁ ବା କୋମଳତା, ମୁଖଚନ୍ଦ୍ରରେ ଥିବା ଲଳିତତର ବସ୍ତୁ ବା ଶୋଭା ଲାବଣ୍ୟ, ସ୍ମିତହାସ୍ୟରେ ଥିବା ଲଳିତତମ ବସ୍ତୁ ବା ଆତ୍ମୀୟତା—

ଲଳିତଂ ଚରଣସରୋଜେ ଲଳିତତରଂ ବଦନଶୀତରୁଚିବିମ୍ବେ ।
ଲଳିତତମଂ ସ୍ମିତରୋଚିଷି ଲଳିତାୟାଃ ବସ୍ତୁ ନୋଽସ୍ତୁ ପୁରତସ୍ତତ୍ ॥

ମଧୁରରୁ ମଧୁରତର, ମହତରୁ ମହତତର, ମୃଦୁଳରୁ ମୃଦୁଳତର, ସୁଲଭରୁ ସୁଲଭତର, ଅରୁଣରୁ ଅରୁଣତର, ସଦୟରୁ ସଦୟତର, ଲଳିତରୁ ଲଳିତତର ମା' ଲଳିତା ହିଁ ରକ୍ଷା କରନ୍ତୁ—

ମଧୁରାନ୍ମଧୁରା ମହତାନ୍ମହତା ମୃଦୁଳାନ୍ମୃଦୁଳା ସୁଲଭାତ୍ ସୁଲଭା ।
ଅରୁଣାଦରୁଣା ସଦୟାତ୍ସଦୟା ଲଳିତାଲ୍ଲଳିତା ଲଳିତାବତୁ ମାମ୍ ॥

ଇତିଶମ୍ ॥

ଡି-୧୧୭, ମ୍ୟୁଜିୟମ୍ ଫ୍ଲାଟ୍ସ୍
ଭୁବନେଶ୍ୱର-୭୫୧୦୧୪
ମାର୍ଗଶୀର ପୂର୍ଣ୍ଣିମା
ଧନୁ ସଂକ୍ରାନ୍ତି
ତା ୧୬।୧୨।୧୯୮୬

ସଦ୍‌ଗୁରୁ ପଦସରୋଜରେଣୁ
**ମହାମେଧାନନ୍ଦନାଥ**
ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ
(ସମ୍ପାଦକ, ସଂସ୍କୃତି ବିଭାଗ, ଓଡ଼ିଶା)

ରାଜରାଜେଶ୍ୱରୀ ମହାତ୍ରିପୁରସୁନ୍ଦରୀ ଷୋଡ଼ଶୀ

# ଶ୍ରୀ ଶ୍ରୀ ଲଳିତାମ୍ବିକାୟୈ ନମଃ



ଅରୁଣାଂ କରୁଣାତରଙ୍ଗିତାକ୍ଷୀଂ

ଧୃତ ପାଶାଙ୍କୁଶପୁଷ୍ପବାଣଚାପାମ୍ ।

ଅଣିମାଦଭିରାବୃତାଂ ମୟୂଖୈ—

ରହମିତ୍ୟେବ ବିଭାବୟେ ଭବାନୀମ୍ ॥

# ଶ୍ରୀଚକ୍ରରାଜ



ବିନ୍ଦୁ-ତ୍ରିକୋଣ-ବସୁକୋଣ-ଦଶାରଯୁଗ୍ମ-ମନ୍ୱସ୍ରନାଗଦଲସଂଯୁତଷୋଡଶାରମ୍ ।
ବୃତ୍ତତ୍ରୟଂ ଚ ଧରଣୀସଦନତ୍ରୟଂ ଚ ଶ୍ରୀଚକ୍ରମେତଦୁଦିତଂ ପରଦେବତାୟାଃ ।।
ଆଦୌ ଦଶାଷ୍ଟାଦଶ-ଷୋଡଶକାଷ୍ଟକାନି ପଶ୍ଚାଚ୍ଚତୁର୍ଦ୍ଦଶାପି ତତୋ ଦଶାଷ୍ଟୌ ।
ପଶ୍ଚାଚ୍ଚତୁଷ୍ଟୟମପି ତ୍ରିତୟଂ ଚ ଷଟ୍କଂ ବୃତ୍ତତ୍ରୟାବରଣତମସ୍ତୀ ତ୍ରୟମପି ତ୍ରୟମେକା ।।

# ଶ୍ରୀଶ୍ରୀଲଳିତାସହସ୍ରନାମସ୍ତୋତ୍ରଂ

## ଅଗସ୍ତ୍ୟ ଉବାଚ

ଅଶ୍ୱାନନ ମହାବୁଦ୍ଧେ ସର୍ବଶାସ୍ତ୍ରବିଶାରଦ ।
କଥିତଂ ଲଳିତାଦେବ୍ୟାଶ୍ଚରିତଂ ପରମାଦ୍ଭୁତମ୍ ।୧।
ପୂର୍ବଂ ପ୍ରାଦୁର୍ଭବୋ ମାତୁସ୍ତତଃ ପଟ୍ଟାଭିଷେଚନମ୍ ।
ଭଣ୍ଡାସୁରବଧଶ୍ଚୈବ ବିସ୍ତରେଣ ତ୍ୱୟୋଦିତଃ ।୨।
ବର୍ଣ୍ଣିତଂ ଶ୍ରୀପୁରଂ ଚାପି ମହାବିଭବବିସ୍ତରମ୍ ।
ଶ୍ରୀମତ୍ପଞ୍ଚଦଶାକ୍ଷର୍ଯ୍ୟା ମହିମା ବର୍ଣ୍ଣିତସ୍ତଥା ।୩।
ଷୋଢାନ୍ୟାସାଦୟୋ ନ୍ୟାସା ନ୍ୟାସଖଣ୍ଡେ ସମୀରିତାଃ ।
ଅନ୍ତର୍ଯାଗକ୍ରମଶ୍ଚୈବ ବହିର୍ଯାଗକ୍ରମସ୍ତଥା ।୪।
ମହାଯାଗକ୍ରମଶ୍ଚାପି ପୂଜାଖଣ୍ଡେ ପ୍ରକୀର୍ତ୍ତିତଃ ।
ପୁରଶ୍ଚରଣଖଣ୍ଡେ ତୁ ଜପଲକ୍ଷଣମୀରିତମ୍ ।୫।

---

## ପ୍ରସ୍ତାବନା

(ମହର୍ଷି ଅଗସ୍ତ୍ୟ ଭଗବାନ୍ ହୟଗ୍ରୀବଙ୍କୁ କହୁଛନ୍ତି—)ହେ ସକଳ ଶାସ୍ତ୍ରବିଶାରଦ ମହାମେଧା ହୟଗ୍ରୀବ ! ଆପଣ ଶ୍ରୀଦେବୀ ଲଳିତା (ମହାତ୍ରିପୁର ସୁନ୍ଦରୀ)ଙ୍କର ଅତି ଅଦ୍ଭୁତ ଚରିତ କହିଗଲେ ।

ମା'ଙ୍କର କିପରି ଆବିର୍ଭାବ ହେଲା, ତା'ପରେ ପଟ୍ଟାଭିଷେକ, ଭଣ୍ଡାସୁର ବଧ ପ୍ରଭୃତି ବିଷୟ ବିସ୍ତୃତଭାବରେ ଆପଣ କହିଲେ ।

ଶ୍ରୀ (ନଗର) ପୁର ଓ ତା'ର ବୈଭବ ତଥା ପଞ୍ଚଦଶାକ୍ଷରୀର ମହିମା ବର୍ଣ୍ଣନା କଲେ ।୩।

ନ୍ୟାସଖଣ୍ଡରେ ଷୋଢ଼ାନ୍ୟାସ ପ୍ରଭୃତି କଥା କହିଲେ । ପୂଜାଖଣ୍ଡରେ ଅନ୍ତର୍ଯାଗକ୍ରମ, ବହିର୍ଯାଗକ୍ରମ, ମହାଯାଗକ୍ରମ ବିଷୟ କହିଲେ । ପୁରଶ୍ଚରଣ ଖଣ୍ଡରେ ଜପ ଲକ୍ଷଣ ବିଷୟରେ କହିଲେ ।୪-୫।

ହୋମଖଣ୍ଡେ ତ୍ୱୟା ପ୍ରୋକ୍ତୋ ହୋମଦ୍ରବ୍ୟବିଧିକ୍ରମଃ ।
ଚକ୍ରରାଜସ୍ୟ ବିଦ୍ୟାୟାଃ ଶ୍ରୀଦେବ୍ୟା ଦେଶିକାତ୍ମନୋଃ । ୬ ।
ରହସ୍ୟଖଣ୍ଡେ ତାଦାତ୍ମ୍ୟଂ ପରସ୍ପରମୁଦୀରିତମ୍ ।
ସ୍ତୋତ୍ରଖଣ୍ଡେ ବହୁବିଧାଃ ସ୍ତୁତୟଃ ପରିକୀର୍ତ୍ତିତାଃ । ୭ ।
ମନ୍ତ୍ରିଣୀଦଣ୍ଡିନୀଦେବ୍ୟୋଃ ପ୍ରୋକ୍ତଂ ନାମସହସ୍ରକେ ।
ନ ତୁ ଶ୍ରୀଲଳିତାଦେବ୍ୟାଃ ପ୍ରୋକ୍ତଂ ନାମସହସ୍ରକମ୍ । ୮ ।
ତତ୍ର ମେ ସଂଶୟୋ ଜାତୋ ହୟଗ୍ରୀବ ଦୟାନିଧେ ।
କିଂ ବା ତ୍ୱୟା ବିସ୍ମୃତଂ ତଜ୍ଜ୍ଞାତ୍ୱା ବା ସମୁପେକ୍ଷିତମ୍ । ୯ ।
ମମ ବା ଯୋଗ୍ୟତା ନାସ୍ତି ଶ୍ରୋତୁଂ ନାମସହସ୍ରକମ୍ ।
କିମର୍ଥଂ ଭବତା ନୋକ୍ତଂ ତତ୍ର ମେ କାରଣଂ ବଦ । ୧୦ ।

## ସୂତ ଉବାଚ

ଇତି ପୃଷ୍ଟୋ ହୟଗ୍ରୀବୋ ମୁନିନା କୁମ୍ଭଜନ୍ମନା ।
ପ୍ରହୃଷ୍ଟୋ ବଚନଂ ପ୍ରାହ ତାପସଂ କୁମ୍ଭସମ୍ଭବମ୍ । ୧୧ ।

---

ହୋମଖଣ୍ଡରେ ହୋମ ପାଇଁ ଆବଶ୍ୟକ ଦ୍ରବ୍ୟ, ତାର ବିଧାନ ଓ କ୍ରମ ବିଷୟରେ ଆପଣ କହିଲେ । ରହସ୍ୟଖଣ୍ଡରେ ଶ୍ରୀଚକ୍ରରାଜ, ଶ୍ରୀବିଦ୍ୟା, ଶ୍ରୀଦେବୀ, ଶ୍ରୀଗୁରୁ ଓ ସ୍ୱ-ଆତ୍ମା ମଧ୍ୟରେ ଥିବା ତାଦାତ୍ମ୍ୟ ବା ଏକତ୍ୱ ବିଷୟରେ କହିଲେ । ସ୍ତୋତ୍ରଖଣ୍ଡରେ ଅନେକ ସ୍ତବ କୀର୍ତ୍ତନ କରିଗଲେ । ୬-୭ ।

ମନ୍ତ୍ରିଣୀ ଓ ଦଣ୍ଡିନୀ ଦେବୀଙ୍କର ସହସ୍ରନାମ ମତେ କହିଲେ କିନ୍ତୁ ଶ୍ରୀଲଳିତା ସହସ୍ର ନାମ ମତେ କହିଲେ ନାହିଁ । ୮ ।

ହେ ଦୟାନିଧି ହୟଗ୍ରୀବ ! ମୋର ସନ୍ଦେହ ହେଉଛି—ମତେ କହିବାକୁ ଆପଣ ଭୁଲିଗଲେ ନା ଜାଣିକରି କହିଲେ ନାହିଁ । ୯ ।

ଅଥବା ସହସ୍ରନାମ ଶୁଣିବା ପାଇଁ ମୋର ଯୋଗ୍ୟତା ନାହିଁ । ଆପଣ କାହିଁକି କହିଲେ ନାହିଁ, ତା'ର କାରଣ ମତେ କହନ୍ତୁ । ୧୦ ।

ସୂତ କହିଲେ— କୁମ୍ଭଜ ଅଗସ୍ତ୍ୟ ହୟଗ୍ରୀବଙ୍କୁ ଏପରି ପଚାରିବାରୁ ସେ ଆନନ୍ଦରେ ତପସ୍ୱୀ ଅଗସ୍ତ୍ୟଙ୍କୁ କହିଲେ— । ୧୧ ।

ଲୋପାମୁଦ୍ରାପତେଃ ଗସ୍ତ୍ୟ ସାବଧାନମନାଃ ଶୃଣୁ ।
ନାମ୍ନାଂ ସହସ୍ରଂ ଯନ୍ନୋକ୍ତଂ କାରଣଂ ତଦ୍ ବଦାମି ତେ । ୧୨ ।

ରହସ୍ୟମିତି ମତ୍ୱାହଂ ନୋକ୍ତବାଂସ୍ତେ ନ ଚାନ୍ୟଥା ।
ପୁନଶ୍ଚ ପୃଚ୍ଛତେ ଭକ୍ତ୍ୟା ତସ୍ମାତ୍ତଦ୍ୱେ ବଦାମ୍ୟହମ୍ ।୧୩ ।

ବ୍ରୂୟାଚ୍ଛିଷ୍ୟାୟ ଭକ୍ତାୟ ରହସ୍ୟମପି ଦେଶିକଃ ।
ଭବତା ନ ପ୍ରଦେୟଂ ସ୍ୟାଦଭକ୍ତାୟ କଦାଚନ । ୧୪ ।

ନ ଶଠାୟ ନ ଦୁଷ୍ଟାୟ ନାବିଶ୍ୱାସାୟ କର୍ହିଚିତ୍ ।
ଶ୍ରୀମାତୃଭକ୍ତିଯୁକ୍ତାୟ ଶ୍ରୀବିଦ୍ୟାରାଜବେଦିନେ । ୧୫ ।

ଉପାସକାୟ ଶୁଦ୍ଧାୟ ଦେୟଂ ନାମସହସ୍ରକମ୍ ।
ଯାନି ନାମସହସ୍ରାଣି ସଦ୍ୟଃ ସିଦ୍ଧିପ୍ରଦାନି ବୈ । ୧୬ ।

---

(ଶ୍ରୀହୟଗ୍ରୀବ କହୁଛନ୍ତି—) ହେ ଲୋପାମୁଦ୍ରାଙ୍କର ପତି ଅଗସ୍ତ୍ୟ, (ଲଳିତା) ସହସ୍ରନାମ କାହିଁକି କହିଲି ନାହିଁ, ତାର କାରଣ ସ୍ଥିର ମନରେ ଶୁଣନ୍ତୁ । ୧୨ ।

ଏହା ରହସ୍ୟ (ସହସ୍ରନାମ) ବା ଗୋପନୀୟ ବୋଲି ତୁମକୁ କହି ନ ଥିଲି । ଅନ୍ୟ କିଛି କାରଣ ନାହିଁ । ତେବେ ଭକ୍ତିର ସହିତ ପୁଣି ଯେଣୁ ପଚାରିଲ, ତେଣୁ ତୁମକୁ କହିବି । ୧୩ ।

ଏହା ରହସ୍ୟ ବା ଗୋପନୀୟ ହେଲେ ମଧ୍ୟ ଗୁରୁଭକ୍ତ ଶିଷ୍ୟକୁ କହିବେ । କେବେହେଲେ ଏହା ଅଭକ୍ତ ବା ଭକ୍ତିହୀନ ଲୋକକୁ ଦେବା ଉଚିତ ନୁହେ । ୧୪ ।

ଶଠ, ଦୁଷ୍ଟ, ଅବିଶ୍ୱାସୀ ଲୋକକୁ ଏହା ଦେବା ଉଚିତ ନୁହେ । ଶ୍ରୀମାତା (ଷୋଡଶୀ ମହାତ୍ରିପୁରସୁନ୍ଦରୀ)ଙ୍କ ଠାରେ ଭକ୍ତିଯୁକ୍ତ ଓ ଶ୍ରେଷ୍ଠ ଶ୍ରୀବିଦ୍ୟା ଜାଣିଥିବା ଶୁଦ୍ଧ ଉପାସକକୁ ଏହି ସଦ୍ୟ ସିଦ୍ଧିପ୍ରଦ ସହସ୍ରନାମ ଦେବା ଉଚିତ । ୧୫-୧୬ ।

ତନ୍ତ୍ରେଷୁ ଲଲିତାଦେବ୍ୟାସ୍ତେଷୁ ମୁଖ୍ୟମିଦଂ ମୁନେ ।
ଶ୍ରୀବିଦୈ୍ୟବ ତୁ ମନ୍ତ୍ରାଣାଂ ତତ୍ର କାଦିର୍ଯଥା ପରା । ୧୭ ।

ପୁରାଣାଂ ଶ୍ରୀପୁରମିବ ଶକ୍ତୀନାଂ ଲଲିତା ଯଥା ।
ଶ୍ରୀବିଦ୍ୟୋପାସକାନାଂ ଚ ଯଥା ଦେବଃ ପରଃ ଶିବଃ । ୧୮ ।

ତଥା ନାମସହସ୍ରେଷୁ ପରମେତତ୍ପ୍ରକୀର୍ତ୍ତିତମ୍ ।
ଯଥାଽସ୍ୟ ପଠନାଦ୍ଦେବୀ ପ୍ରୀୟତେ ଲଲିତାମ୍ବିକା । ୧୯ ।

ଅନ୍ୟ ନାମସହସ୍ରସ୍ୟ ପାଠାନ୍ନ ପ୍ରୀୟତେ ତଥା ।
ଶ୍ରୀମାତୁଃ ପ୍ରୀତୟେ ତସ୍ମାଦନିଶଂ କୀର୍ତ୍ତୟେଦିଦମ୍ । ୨୦ ।

---

ତନ୍ତ୍ରରେ ଶ୍ରୀଲଳିତା (ମହାତ୍ରିପୁରସୁନ୍ଦରୀ)ଙ୍କର ଅନେକ ସହସ୍ରନାମ ଅଛି । ସେଥିରୁ ଏହି ସହସ୍ରନାମଟି ମୁଖ୍ୟ । ମନ୍ତ୍ରମାନଙ୍କ ମଧ୍ୟରେ ଶ୍ରୀବିଦ୍ୟା ଏବଂ ତହିଁରେ କାଦି-ମନ୍ତ୍ର ସର୍ବୋତ୍କୃଷ୍ଟ । ୧୭ ।

ପୁର ବା ନଗରମାନଙ୍କ ମଧ୍ୟରେ ଯେପରି ଲଳିତାଙ୍କର ଶ୍ରୀପୁର ସେହିପରି ସକଳ ଶକ୍ତିମାନଙ୍କ ମଧ୍ୟରେ ଲଳିତା ହେଉଛନ୍ତି ପରା ବା ଶ୍ରେଷ୍ଠ ଶକ୍ତି । ଶ୍ରୀବିଦ୍ୟା-ଉପାସକମାନଙ୍କ ପାଇଁ ଶିବ ହେଉଛନ୍ତି ଶ୍ରେଷ୍ଠ ଦେବତା । ୧୮ ।

ସେହିପରି ନାମସହସ୍ରମାନଙ୍କ ମଧ୍ୟରେ ଏହି ଲଳିତା ସହସ୍ରନାମ ହେଉଛି ଶ୍ରେଷ୍ଠ । ଏହା ପଢ଼ିଲେ ମା' ଲଳିତା ଯେପରି ପ୍ରୀତ ହୁଅନ୍ତି, ଅନ୍ୟ ସହସ୍ରନାମ ପାଠ କଲେ ସେପରି ପ୍ରସନ୍ନ ହୁଅନ୍ତି ନାହିଁ । ଶ୍ରୀମାତା (ଶ୍ରୀଲଳିତା ପରମେଶ୍ୱରୀ)ଙ୍କର ପ୍ରୀତି ନିମିତ୍ତ ଏହାକୁ ସବୁବେଳେ କୀର୍ତ୍ତନ ବା ପାଠ କରିବ । ୧୯-୨୦ ।

ବିଲ୍ୱପତ୍ରୈଶ୍ଚକ୍ରରାଜେ ଯୋଽର୍ଚ୍ଚୟେଲ୍ଲଲିତାମ୍ବିକାମ୍ ।
ପଦ୍ମୈର୍ବା ତୁଳସୀପତ୍ରୈରେଭିର୍ନାମସହସ୍ରକୈଃ । ୨୧ ।
ସଦ୍ୟଃ ପ୍ରସାଦଂ କୁରୁତେ ତସ୍ୟ ସିଂହାସନେଶ୍ୱରୀ ।
ଚକ୍ରାଧିରାଜମଭ୍ୟର୍ଚ୍ଚ୍ୟ ଜପ୍ତ୍ୱା ପଞ୍ଚଦଶାକ୍ଷରୀମ୍ । ୨୨ ।
ଜପାନ୍ତେ କୀର୍ତ୍ତୟେନ୍ନିତ୍ୟମିଦଂ ନାମସହସ୍ରକମ୍ ।
ଜପପୂଜାଦ୍ୟଶକ୍ତଶ୍ଚେତ୍ପଠେନ୍ନାମସହସ୍ରକମ୍ । ୨୩ ।
ସାଙ୍ଗାର୍ଚ୍ଚନେ ସାଙ୍ଗଜପେ ଯତ୍ଫଲଂ ତଦବାପ୍ନୁୟାତ୍ ।
ଉପାସନେ ସ୍ତୁତିରନ୍ୟାଃ ପଠେଦଭ୍ୟୁଦୟୋ ହି ସଃ । ୨୪ ।
ଇଦଂ ନାମସହସ୍ରଂ ତୁ କୀର୍ତ୍ତୟେନ୍ନିତ୍ୟକର୍ମବତ୍ ।
ଚକ୍ରରାଜାର୍ଚ୍ଚନଂ ଦେବ୍ୟା ଜପୋ ନାମ୍ନାଂ ଚ କୀର୍ତ୍ତନମ୍ । ୨୫ ।
ଭକ୍ତସ୍ୟ କୃତ୍ୟମେତାବଦନ୍ୟଦଭ୍ୟୁଦୟଂ ବିଦୁଃ ।
ଭକ୍ତସ୍ୟାବଶ୍ୟକମିଦଂ ନାମ ସାହସ୍ରକୀର୍ତ୍ତନମ୍ । ୨୬ ।

---

ଚକ୍ରରାଜ ଶ୍ରୀଚକ୍ରରେ ବେଲପତ୍ର, ପଦ୍ମପୁଷ୍ପ ବା ତୁଳସୀପତ୍ର ଚଢ଼ାଇ ଏହି ସହସ୍ରନାମ ପଢ଼ି ଯେ ମା' ଶ୍ରୀଲଳିତାଙ୍କର ପୂଜା କରିବେ, ତାଙ୍କ ଉପରେ ସିଂହାସନେଶ୍ୱରୀ ବିଶ୍ୱସାମ୍ରାଜ୍ଞୀ ପରମ୍ବା ଲଳିତା ସଦ୍ୟ ପ୍ରସନ୍ନ ହେବେ । ଚକ୍ରରାଜ ଶ୍ରୀଚକ୍ର ପୂଜା ପରେ ପଞ୍ଚଦଶାକ୍ଷରୀ ମନ୍ତ୍ର ଜପକରି, ଜପ ଶେଷରେ ସବୁବେଳେ ଏହି ଲଳିତା ସହସ୍ରନାମ କୀର୍ତ୍ତନ କରିବା ଉଚିତ । ଜପ ପୂଜାଦି କରିବାରେ ଅସମର୍ଥ ହେଲେ ମଧ୍ୟ ଏହି ଲଳିତା ସହସ୍ରନାମ ପାଠ କରିବା ଉଚିତ୍ । ୨୧-୨୩ ।

ପୂଜା ପୂଜା, ପୂରା ଜପକଲେ ଯେଉଁ ଫଳ ସେହି ଫଳ ଏହି ସହସ୍ରନାମ ପାଠକଲେ ମିଳିବ । ପୂଜାବେଳେ ଶ୍ରୀଲଳିତାଙ୍କର (ଭଗବତ୍ପାଦ ଶ୍ରୀଶଙ୍କରର୍ଷି ପ୍ରଭୃତିଙ୍କ କୃତ) ଅନ୍ୟାନ୍ୟ ସ୍ତୋତ୍ର ପାଠ କଲେ ଅଭ୍ୟୁଦୟ ବା ଆତ୍ମୋନ୍ନତି ହେବ । ୨୪ ।

ଏହି ଲଳିତା ସହସ୍ରନାମ ନିତ୍ୟକର୍ମ ଭଳି ପ୍ରତ୍ୟହ ପାଠ କରିବା ଉଚିତ୍ । ରାଜରାଜେଶ୍ୱରୀ ଶ୍ରୀଦେବୀ ଲଳିତା ଷୋଡଶୀଙ୍କର ଚକ୍ରରାଜ ଶ୍ରୀଚକ୍ର ପୂଜା, ମନ୍ତ୍ରଜପ ଓ ସହସ୍ରନାମ ପାଠ—ଏତକ ପ୍ରତ୍ୟେକ ଭକ୍ତର କର୍ତ୍ତବ୍ୟ । ଏହା ତାହାର ଶ୍ରେଷ୍ଠ, ମଙ୍ଗଳ ବା ଉନ୍ନତି ସକାଶେ ବୋଲି ଜାଣିବ । ଏହି ଲଳିତା ସହସ୍ରନାମ ପାଠ ପ୍ରତି ଭକ୍ତ ପକ୍ଷରେ ଆବଶ୍ୟକ । ୨୫-୨୬ ।

ଅତ ହେତୁଂ ପ୍ରବକ୍ଷ୍ୟାମି ଶୃଣୁ ତ୍ୱଂ କୁମ୍ଭସମ୍ଭବ ।
ପୁରା ଶ୍ରୀଲଲିତାଦେବୀ ଭକ୍ତାନାଂ ହିତକାମ୍ୟୟା । ୨୭ ।
ବାଗ୍‌ଦେବୀର୍ବଶିନୀମୁଖ୍ୟାଃ ସମାହୂୟେଦମବ୍ରବୀତ୍ ।
ବାଗ୍‌ଦେବତା ବଶିନ୍ୟାଦ୍ୟାଃ ଶୃଣୁଧ୍ୱଂ ବଚନଂ ମମ । ୨୮ ।
ଭବତ୍ୟୋ ମତ୍ପ୍ରସାଦେନ ପ୍ରୋଲ୍ଲସଦ୍‌ବାଗ୍‌ବିଭୂତୟଃ ।
ମଦ୍ଭକ୍ତାନାଂ ବାଗ୍‌ବିଭୂତିପ୍ରଦାନେ ବିନିଯୋଜିତାଃ । ୨୯ ।
ମଚ୍ଚକ୍ରସ୍ୟ ରହସ୍ୟଜ୍ଞା ମମ ନାମପରାୟଣାଃ ।
ମମ ସ୍ତୋତ୍ରବିଧାନାୟ ତସ୍ମାଦାଜ୍ଞାପୟାମି ବଃ । ୩୦ ।
କୁରୁଧ୍ୱମଙ୍କିତଂ ସ୍ତୋତ୍ରଂ ମମ ନାମସହସ୍ରକୈଃ ।
ଯେନ ଭକ୍ତୈଃ ସ୍ତୁତାୟା ମେ ସଦ୍ୟଃ ପ୍ରୀତିଃ ପରା ଭବେତ୍ । ୩୧ ।
ଇତ୍ୟାଜ୍ଞପ୍ତା ବଚୋଦେବ୍ୟୋ ଦେବ୍ୟା ଶ୍ରୀଲଲିତାମ୍ବୟା ।
ରହସ୍ୟୈର୍ନାମଭିର୍ଦିବ୍ୟୈଶ୍ଚକ୍ରୁଃ ସ୍ତୋତ୍ରମନୁତ୍ତମମ୍ । ୩୨ ।

---

ହେ କୁମ୍ଭଜ ଅଗସ୍ତ୍ୟ ! ତାହାର (ଏହି ନାମ ପାଠରେ ଶ୍ରେଷ୍ଠତାର) କାରଣ କହୁଛି ଶୁଣନ୍ତୁ । ପୂର୍ବେ ଶ୍ରୀଲଲିତା ପରମେଶ୍ୱରୀ ଭକ୍ତମାନଙ୍କର ହିତ କାମନା କରି, ବଶିନୀ ପ୍ରମୁଖ ବାଗ୍‌ଦେବୀଙ୍କୁ ଡାକି କହିଲେ—

ହେ ବଶିନ ପ୍ରମୁଖ (ଅଷ୍ଟ) ବାଗ୍‌ଦେବତା ମୋ କଥା ଶୁଣ । ୨୮ ।

ମୋ ପ୍ରସାଦରୁ ତୁମମାନଙ୍କର ବାଗ୍-ବିଭୂତି ଅତି ଉନ୍ନତ । ତୁମେ-ମାନେ ମୋ ଭକ୍ତମାନଙ୍କୁ ବାଗ୍-ବିଭୂତି ଦେବାରେ ବିନିଯୁକ୍ତ । ୨୯ ।

ତୁମେମାନେ ମୋ ଚକ୍ରରହସ୍ୟ ଜାଣିଛ, ମୋର ସହସ୍ରନାମ ତୁମପାଇଁ ଗତିମୁକ୍ତି । ମୋର ସ୍ତୋତ୍ର ପାଠ କରିବା ପାଇଁ ତୁମକୁ ତେଣୁ ମୁଁ ଆଦେଶ ଦେଉଛି । ୩୦ ।

ମୋର ସହସ୍ର ନାମକୁ ନେଇ ତୁମେ ସ୍ତୋତ୍ର ପ୍ରସ୍ତୁତ କର, ଯାହାକୁ ପଢ଼ି ଭକ୍ତଗଣ ମୋର ପରମ ପ୍ରୀତି ସଙ୍ଗେ ସଙ୍ଗେ ଲଭ କରିପାରିବେ । ୩୧ ।

(ଶ୍ରୀହୟଗ୍ରୀବ କହିଲେ—) ଶ୍ରୀଦେବୀ ଲଳିତା ପରମେଶ୍ୱରୀଙ୍କ ଆଦେଶ ପାଇ ବାଗ୍‌ଦେବୀଗଣ ରହସ୍ୟନାମାବଳିଦ୍ୱାରା ଉତ୍କୃଷ୍ଟ ସ୍ତୋତ୍ର ପ୍ରସ୍ତୁତ କଲେ । ୩୨

ରହସ୍ୟନାମ ସାହସ୍ରମିଦଂ ତଦ୍‌ବିଶ୍ରୁତଂ ପରମ୍ ।
ତତଃ କଦାଚିତ୍ ସଦସି ସ୍ଥିତ୍ୱା ସିଂହାସନେଽମ୍ବିକା । ୩୩ ।
ସ୍ୱସେବାବସରଂ ପ୍ରାଦାତ୍ ସର୍ବେଷାଂ କୁମ୍ଭସମ୍ଭବ ।
ସେବାର୍ଥମାଗତାସ୍ତତ୍ର ବ୍ରହ୍ମାଣୀବ୍ରହ୍ମକୋଟୟଃ । ୩୪ ।
ଲକ୍ଷ୍ମୀନାରାୟଣାନାଂ ଚ କୋଟୟଃ ସମୁପାଗତାଃ ।
ଗୌରୀକୋଟିସମେତାନାଂ ରୁଦ୍ରାଣାମପି କୋଟୟଃ । ୩୫ ।
ମନ୍ତ୍ରିଣୀଦଣ୍ଡିନୀମୁଖ୍ୟାଃ ସେବାର୍ଥଂ ଯାଃ ସମାଗତାଃ ।
ଶକ୍ତୟୋ ବିବିଧାକାରାସ୍ତାସାଂ ସଂଖ୍ୟା ନ ବିଦ୍ୟତେ । ୩୬ ।
ଦିବ୍ୟୌଘା ମାନବୌଘାଶ୍ଚ ସିଦ୍ଧୌଘାଶ୍ଚ ସମାଗତାଃ ।
ତତ୍ର ଶ୍ରୀଲଲିତାଦେବୀ ସର୍ବେଷାଂ ଦର୍ଶନଂ ଦଦୌ । ୩୭ ।
ତେଷୁ ଦୃଷ୍ଟ୍ୱୋପବିଷ୍ଟେଷୁ ସ୍ୱେ ସ୍ୱେ ସ୍ଥାନେ ଯଥାକ୍ରମମ୍ ।
ତତଃ ଶ୍ରୀଲଲିତାଦେବୀକଟାକ୍ଷାକ୍ଷେପନୋଦିତାଃ । ୩୮ ।

---

ସେହି (ଲଳିତା ସହସ୍ରନାମ) ସ୍ତୋତ୍ର ରହସ୍ୟ ନାମ ସହସ୍ର ବୋଲି ପ୍ରସିଦ୍ଧ । ତା'ପରେ ଦିନେ ମା' ଲଳିତା ସଭାରେ ସିଂହାସନରେ ବସିଥିଲା ବେଳେ, ନିଜର ସେବା କରିବା ପାଇଁ ସମସ୍ତଙ୍କୁ ସୁଯୋଗ ଦେଲେ । ହେ କୁମ୍ଭଜ ଅଗସ୍ତ୍ୟ ! ବ୍ରହ୍ମ ସ୍ତରର ଦେବତାଗଣ ସେମାନଙ୍କ ବ୍ରହ୍ମାଣୀଶକ୍ତି ସହ ସେଠାରେ ସେବା କରିବା ପାଇଁ ଉପସ୍ଥିତ ହେଲେ । ୩୩-୩୪ ।

ଲକ୍ଷ୍ମୀ ନାରାୟଣଙ୍କ କୋଟି କୋଟି ବା ସ୍ତରର ତଥା ଗୌରୀ ସମେତ ରୁଦ୍ରଙ୍କ କୋଟିର ଅନେକ ଦେବତା ଉପସ୍ଥିତ ହେଲେ । ୩୫ ।

ମନ୍ତ୍ରିଣୀ ଓ ଦଣ୍ଡିନୀ (ବାରାହୀ) ପ୍ରମୁଖ ଯେଉଁ ବିବିଧ ଶକ୍ତି ସେବା କରିବା ପାଇଁ ଆସିଥିଲେ ସେମାନଙ୍କ ସଂଖ୍ୟା ଗଣି ହେବ ନାହିଁ । ୩୬ ।

ଦିବ୍ୟ-ମାନବ-ସିଦ୍ଧ-ଗୁରୁବୃନ୍ଦ ଉପସ୍ଥିତ ଥିଲେ । ସେଠାରେ ଦେବୀ ଶ୍ରୀଲଲିତା ପରମେଶ୍ୱରୀ ସମସ୍ତଙ୍କୁ ଦର୍ଶନ ଦେଲେ । ୩୭ ।

ସମସ୍ତେ ନିଜ ନିଜ ସ୍ଥାନ ଦେଖି ଆସନରେ ବସିଲା ପରେ, ସେଠାରେ ଦେବୀ ଶ୍ରୀଲଲିତା (ଷୋଡ଼ଶୀ ମହାତ୍ରିପୁରସୁନ୍ଦରୀ)ଙ୍କର କଟାକ୍ଷ ନିର୍ଦ୍ଦେଶରେ ପ୍ରେରଣା ପାଇ, — । ୩୮ ।

ଇତ୍ଥାସ୍ତୁ ବଶିନୀମୁଖ୍ୟା ବଦ୍ଧାଞ୍ଜଲିପୁଟାସ୍ତଦା ।
ଅସ୍ତୁବନ୍ନାମସାହସ୍ରୈଃ ସ୍ୱକୃତୈର୍ଲଲିତାମ୍ବିକାମ୍ । ୩୯ ।
ଶ୍ରୁତ୍ୱା ସ୍ତବଂ ପ୍ରସନ୍ନାଭୂଲ୍ଲଲିତା ପରମେଶ୍ୱରୀ ।
ତେ ସର୍ବେ ବିସ୍ମୟଂ ଜଗ୍ମୁର୍ୟେ ତତ୍ର ସଦସି ସ୍ଥିତାଃ । ୪୦ ।
ତତଃ ପ୍ରୋବାଚ ଲଲିତା ସଦସ୍ୟାନ୍ ଦେବତାଗଣାନ୍ ।

## ଶ୍ରୀ ଲଲିତାମ୍ବିକା ଉବାଚ

ମମାଜ୍ଞୟୈବ ବାଗ୍ଦେବ୍ୟଶ୍ଚକ୍ରୁଃ ସ୍ତୋତ୍ରମନୁତ୍ତମମ୍ । ୪୧ ।
ଅଙ୍କିତଂ ନାମଭିର୍ଦିବ୍ୟୈର୍ମମ ପ୍ରୀତିବିଧାୟକୈଃ ।
ତତ୍ ପଠଧ୍ୱଂ ସଦା ଯୂୟଂ ସ୍ତୋତ୍ରଂ ମତ୍ପ୍ରୀତିବୃଦ୍ଧୟେ । ୪୨ ।

---

ବଶିନୀ ପ୍ରମୁଖ ବାଗ୍ଦେବତା ଠିଆ ହୋଇ ବଦ୍ଧାଞ୍ଜଳିପୂର୍ବରେ ସେମାନଙ୍କ ପ୍ରସ୍ତୁତ ସହସ୍ରନାମ ଦ୍ୱାରା ପରାମ୍ବା ଶ୍ରୀଲଳିତା ପରମେଶ୍ୱରୀଙ୍କର ସ୍ତୁତି କଲେ । ୩୯ ।

ଉକ୍ତ ଅପୂର୍ବ ସ୍ତବ ଶୁଣି ଶ୍ରୀଲଳିତା ପରମେଶ୍ୱରୀ ପ୍ରସନ୍ନ ହେଲେ । ସେ ସଭାରେ ଯେଉଁମାନେ ଉପସ୍ଥିତ ଥିଲେ ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ୪୦ ।

ତା'ପରେ ଦେବୀ ଲଳିତା ଉପସ୍ଥିତ ଦେବତାମାନଙ୍କୁ କହିଲେ—ମୋର ଆଦେଶରେ ହିଁ ବାଗ୍ଦେବୀଗଣ ଏହି ଉତ୍କୃଷ୍ଟ ସ୍ତୋତ୍ର ପ୍ରସ୍ତୁତ କଲେ ।୪୧

ଦିବ୍ୟ ନାମ ସମ୍ବଳିତ ମୋର ସନ୍ତୋଷବିଧାନକାରୀ ଏହି ସ୍ତୋତ୍ର ମୋର ପ୍ରୀତି ବର୍ଦ୍ଧନାର୍ଥେ ତୁମେମାନେ ସର୍ବଦା ପାଠ କର । ୪୨ ।

ପ୍ରବର୍ତ୍ତିସ୍ୟଧ୍ୱଂ ଭକ୍ତେଷୁ ମମ ନାମସହସ୍ରକମ୍ ।
ଇଦଂ ନାମସହସ୍ରଂ ମେ ଯୋ ଭକ୍ତଃ ପଠତେ ସକୃତ୍ । ୪୩ ।

ସ ମେ ପ୍ରିୟତମୋ ଜ୍ଞେୟସ୍ତସ୍ମୈ କାମାନ୍ ଦଦାମ୍ୟହମ୍ ।
ଶ୍ରୀଚକ୍ରେ ମାଂ ସମଭ୍ୟର୍ଚ୍ୟ ଜପ୍ତ୍ୱା ପଞ୍ଚଦଶାକ୍ଷରୀମ୍ । ୪୪ ।

ପଶ୍ଚାନ୍ନାମସହସ୍ରଂ ମେ କୀର୍ତ୍ତୟେନ୍ମମ ତୁଷ୍ଟୟେ ।
ମାମର୍ଚ୍ଚୟତୁ ବା ମା ବା ବିଦ୍ୟାଂ ଜପତୁ ବା ନ ବା । ୪୫ ।

କୀର୍ତ୍ତୟେନ୍ନାମସାହସ୍ରମିଦଂ ମତ୍ପ୍ରୀତୟେ ସଦା ।
ମତ୍ପ୍ରୀତ୍ୟା ସକଲାନ୍ କାମାନ୍ ଲଭତେ ନାତ୍ର ସଂଶୟଃ । ୪୬ ।

ତସ୍ମାନ୍ନାମସହସ୍ରଂ ମେ କୀର୍ତ୍ତୟଧ୍ୱଂ ସଦାଦରାତ୍ ।
ଇତି ଶ୍ରୀଲଲିତେଶାନୀ ଶାସ୍ତି ଦେବାନ୍ ସହାନୁଗାନ୍ । ୪୭ ।

---

ଭକ୍ତମାନଙ୍କ ମଧ୍ୟରେ ମୋର ଏହି ସହସ୍ରନାମ ପ୍ରବର୍ତ୍ତନ କରାଅ, ମୋର ଏହି ସହସ୍ରନାମ ଯେ ଥରେ ପଢ଼ିବ, ସେ ମୋର ଅତି ପ୍ରିୟ ବୋଲି ଜାଣିବ । ମୁଁ ତାହାକୁ ଅଭୀଷ୍ଟ ପ୍ରଦାନ କରିବି । ଶ୍ରୀଚକ୍ରରେ ମୋତେ ପୂଜାକରି. ମୋର ପଞ୍ଚଦଶାକ୍ଷରୀ ମନ୍ତ୍ର ଜପି ପରେ ଏହି ଲଲିତା ସହସ୍ରନାମ ମୋର ସନ୍ତୋଷ ସକାଶେ ପଢ଼ିବା ଉଚିତ । ମୋତେ ପୂଜା କରନ୍ତୁ ବା ନ କରନ୍ତୁ, ମୋର ମନ୍ତ୍ର ଜପ କରନ୍ତୁ ବା ନ କରନ୍ତୁ, ମୋର ପ୍ରୀତି ସକାଶେ ଏହି ସହସ୍ର ନାମ କୀର୍ତ୍ତନ କରିବା ଉଚିତ । ମୋର ପ୍ରୀତି ଯୋଗୁଁ ସକଳ ଅଭୀଷ୍ଟ ଲାଭ ହେବ—ଏହା ନିଃସନ୍ଦେହ । ୪୩–୪୭ ।

ତେଣୁ ମୋର ଏହି ଲଲିତା ସହସ୍ରନାମ ସର୍ବଦା ଆଗ୍ରହର ସହିତ ପାଠ କରିବ ।

(ଶ୍ରୀ ହୟଗ୍ରୀବ କହିଲେ—)ଏହିପରି ଶ୍ରୀଲଲିତା ପରମେଶ୍ୱରୀ ଦେବତା-ମାନଙ୍କୁ ଓ ତାଙ୍କର ସହଚରମାନଙ୍କୁ ଅନୁଶାସନ ବା ଆଜ୍ଞା ଦେଲେ । ୪୭ ।

ତଦାଜ୍ଞୟା ତଦାରଭ୍ୟ ବ୍ରହ୍ମବିଷ୍ଣୁମହେଶ୍ୱରାଃ ।
ଶକ୍ତୟୋ ମନ୍ତ୍ରିଣୀମୁଖ୍ୟା ଇଦଂ ନାମସହସ୍ରକମ୍ । ୪୮ ।

ପଠନ୍ତି ଭକ୍ତ୍ୟା ସତତଂ ଲଳିତାପରିତୁଷ୍ଟୟେ ।
ତସ୍ମାଦବଶ୍ୟଂ ଭକ୍ତେନ କୀର୍ତ୍ତନୀୟମିଦଂ ମୁନେ । ୪୯ ।

ଆବଶ୍ୟକତ୍ୱେ ହେତୁସ୍ତେ ମୟା ପ୍ରୋକ୍ତୋ ମୁନୀଶ୍ୱର ।
ଇଦାନୀଂ ନାମସାହସ୍ରଂ ବକ୍ଷ୍ୟାମି ଶ୍ରଦ୍ଧୟା ଶୃଣୁ । ୫୦ ।

ଇତି ଶ୍ରୀ ବ୍ରହ୍ମାଣ୍ଡପୁରାଣେ ଉତ୍ତରଖଣ୍ଡେ ଶ୍ରୀହୟଗ୍ରୀବାଗସ୍ତ୍ୟସଂବାଦେ
ଶ୍ରୀଲଳିତା ସହସ୍ରନାମ ପୂର୍ବଭାଗୋ ନାମ ପ୍ରଥମୋଽଧ୍ୟାୟଃ ।

---

ଦେବୀଙ୍କ ଆଜ୍ଞାନୁସାରେ ସେହି ଦିନଠାରୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ମନ୍ତ୍ରିଣୀ ପ୍ରଭୃତି ଶକ୍ତିଗଣ ଏହି ଲଳିତା ସହସ୍ରନାମକୁ ପରମେଶୀ ଲଳିତାଙ୍କ ସନ୍ତୋଷ ସକାଶେ ଭକ୍ତିର ସହିତ ସର୍ବଦା ପଢ଼ୁଛନ୍ତି । ତେଣୁ ହେ ମୁନି ଅଗସ୍ତ୍ୟ ! ଏହାକୁ ଭକ୍ତ ଲୋକ ଅବଶ୍ୟ ପଢ଼ିବା ଉଚିତ । ୪୮-୪୯ ।

ହେ ମୁନୀଶ୍ୱର ଅଗସ୍ତ୍ୟ ! ଆବଶ୍ୟକ ହେବାରୁ ତୁମକୁ ମୁଁ ଏହି ସ୍ତୋତ୍ର (ପ୍ରସ୍ତୁତି ଓ ପାଠ)ର କାରଣ କହିଲି । ବର୍ତ୍ତମାନ ସହସ୍ରନାମ କହିବି, ଶ୍ରଦ୍ଧାର ସହିତ ଶୁଣ । ୫୦ ।



## ନ୍ୟାସଃ--

ଆଚମନଂ—ଶ୍ରୀଂ ହ୍ରୀଂ କ୍ଲୀଂ ଐଂ ସୌଃ

ମୂଳମନ୍ତ୍ରଃ—ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ । ପଞ୍ଚଦଶାକ୍ଷରୀ ବା ।

ସଂକଳ୍ପଃ—ଅଥ ଶ୍ରୀ ଲଳିତା ସହସ୍ରନାମାର୍ଚ୍ଚନାଂ (ପାଠଂ ବା) କରିଷ୍ୟେ ।

## ବିନିଯୋଗଃ--

ଅସ୍ୟ ଶ୍ରୀଲଳିତାସହସ୍ରନାମସ୍ତୋତ୍ରମାଲାମନ୍ତ୍ରସ୍ୟ ବଶିନ୍ୟାଦି ବାଗ୍‌ଦେବତା ଋଷୟଃ । ଅନୁଷ୍ଟୁପ୍ ଛନ୍ଦଃ । ଶ୍ରୀ ଲଳିତାମହାତ୍ରିପୁରସୁନ୍ଦରୀ ଦେବତା । ଐଂ ବୀଜଂ । ସୌଃ ଶକ୍ତିଃ । କ୍ଲୀ କୀଲକଂ । ଶ୍ରୀଲଳିତାମହାତ୍ରିପୁର-ସୁନ୍ଦରୀ ପ୍ରସାଦସିଦ୍ଧିଦ୍ୱାରା ( ଚିନ୍ତିତଫଳାବାପ୍ତ୍ୟର୍ଥଂ ) ସର୍ବାଭୀଷ୍ଟସିଦ୍ଧ୍ୟର୍ଥେ ସ୍ତୋତ୍ରାର୍ଚ୍ଚନାସ୍ତୁ (ପାଠେ ବା) ବିନିଯୋଗଃ ॥

## ଋଷ୍ୟାଦିନ୍ୟାସଃ--

ଶ୍ରୀଭଗବତୀଭ୍ୟୋ ବଶିନ୍ୟାଦିଭ୍ୟୋ

ବାଗ୍‌ଦେବତାଭ୍ୟ ଋଷିଭ୍ୟୋ ନମଃ —ଶିରସି ।

ଅନୁଷ୍ଟୁପ୍‌ଛନ୍ଦସେ ନମଃ —ମୁଖେ ।

ଶ୍ରୀଲଳିତାମହାମହାତ୍ରିପୁରସୁନ୍ଦର୍ୟୈ ନମଃ—ହୃଦୟେ ।

ଐଂ ବୀଜାୟ ନମଃ —ନାଭୌ ।

ସୌଃ ଶକ୍ତୟେ ନମଃ —ଗୁହ୍ୟେ ।

କ୍ଲୀଂ କୀଲକାୟ ନମଃ —ପାଦୟୋଃ ।

ଶ୍ରୀଲଳିତାମହାତ୍ରିପୁରସୁନ୍ଦରୀ ପ୍ରସାଦସିଦ୍ଧିଦ୍ୱାରା ସର୍ବାଭୀଷ୍ଟପୂର୍ତ୍ତ୍ୟର୍ଥେ

ସ୍ତୋତ୍ରାର୍ଚ୍ଚନାୟାଂ (ପାଠେ ବା) ବିନିଯୋଗଃ—ସର୍ବାଙ୍ଗେ ॥

## କରନ୍ୟାସଃ--

ଐଂ ଅଙ୍ଗୁଷ୍ଠାଭ୍ୟାଂ କାଯ୍ୟୈ ନମଃ ।
କ୍ଲୀଂ ତର୍ଜନ୍ୟାଭ୍ୟାଂ କାଯ୍ୟୈ ନମଃ ।
ସୌଃ ମଧ୍ୟମାଭ୍ୟାଂ କାଯ୍ୟୈ ନମଃ ।
ଐଂ ଅନାମିକାଭ୍ୟାଂ କାଯ୍ୟୈ ନମଃ ।
କ୍ଲୀଂ କନିଷ୍ଠିକାଭ୍ୟାଂ କାଯ୍ୟୈ ନମଃ ।
ସୌଃ କରତଳକରପୃଷ୍ଠାଭ୍ୟାଂ କାଯ୍ୟୈ ନମଃ ।

## ଷଡ଼ଙ୍ଗଦେବୀନ୍ୟାସଃ--

ଐଂ ହୃଦୟଦେବ୍ୟୈ ନମଃ
କ୍ଲୀଂ ଶିରୋଦେବ୍ୟୈ ସ୍ୱାହା
ସୌଃ ଶିଖାଦେବ୍ୟୈ ବଷଟ୍
ଐଂ କବଚଦେବ୍ୟୈ ହୁଂ
କ୍ଲୀଂ ନେତ୍ରଦେବ୍ୟୈ ବୌଷଟ୍
ସୌଃ ଅସ୍ତ୍ରଦେବ୍ୟୈ ଫଟ୍ ॥

॥ ଭୂର୍ଭୁବଃସ୍ୱୁବରୋମିତି ଦିଗ୍‌ବନ୍ଧଃ ॥

## ଧ୍ୟାନଂ

ସିନ୍ଦୂରାରୁଣବିଗ୍ରହାଂ ତ୍ରିନୟନାଂ ମାଣିକ୍ୟମୌଳିସ୍ଫୁରତ୍—
ତାରାନାୟକଶେଖରାଂ ସ୍ମିତମୁଖୀମାପୀନବକ୍ଷୋରୁହାମ୍ ।
ପାଣିଭ୍ୟାମଳିପୂର୍ଣ୍ଣରତ୍ନଚଷକଂ ରକ୍ତୋତ୍ପଳଂ ବିଭ୍ରତୀଂ
ସୌମ୍ୟାଂ ରତ୍ନଘଟସ୍ଥରକ୍ତଚରଣାଂ ଧ୍ୟାୟେତ୍ ପରାମମ୍ବିକାମ୍ ॥୧॥

ଅରୁଣାଂ କରୁଣାତରଙ୍ଗିତାକ୍ଷୀଂ ଧୃତପାଶାଙ୍କୁଶବାଣଚାପାମ୍ ।
ଅଣିମାଦିଭିରାବୃତାଂ ମୟୂଖୈରହମିତ୍ୟେବ ବିଭାବୟେ ଭବାନୀମ୍ ॥୨॥

ଧ୍ୟାୟେତ୍ ପଦ୍ମାସନସ୍ଥାଂ ବିକସିତବଦନାଂ ପଦ୍ମପତ୍ରାୟତାକ୍ଷୀଂ
ହେମାଭାଂ ପୀତବସ୍ତ୍ରାଂ କରକଳିତଲସଦ୍ଧେମପଦ୍ମାଂ ବରାଙ୍ଗୀମ୍ ।
ସର୍ବାଲଙ୍କାରଯୁକ୍ତାଂ ସତତମଭୟଦାଂ ଭକ୍ତନମ୍ରାଂ ଭବାନୀଂ
ଶ୍ରୀବିଦ୍ୟାଂ ଶାନ୍ତମୂର୍ତ୍ତିଂ ସକଳସୁରନୁତାଂ ସର୍ବସମ୍ପତ୍ପ୍ରଦାତ୍ରୀମ୍ ॥୩॥

ସକୁଙ୍କୁମବିଲେପନାମଳିକଚୁମ୍ବିକସ୍ତୂରିକାଂ
ସମନ୍ଦହସିତେକ୍ଷଣାଂ ସଶରଚାପପାଶାଙ୍କୁଶାମ୍ ।

ଅଶେଷଜନମୋହିନୀମରୁଣମାଲ୍ୟଭୂଷାମ୍ବରାଂ ।
ଜପାକୁସୁମଭାସୁରାଂ ଜପବିଧୌ ସ୍ମରେଦମ୍ବିକାମ୍ ॥୪॥

ବାଳାର୍କମଣ୍ଡଳାଭାସାଂ ଚତୁର୍ବାହୁଂ ତ୍ରିଲୋଚନାମ୍ ।
ପାଶାଙ୍କୁଶଶରାଂଶ୍ଚାପଂ ଧାରୟନ୍ତୀଂ ଶିବାଂ ଶ୍ରୟେ ॥୫॥

କହ୍ଲାରୋତ୍ପଲକୈରବାମ୍ବୁଜଦଳନ୍ମାକନ୍ଦସନ୍ମଞ୍ଜରୀଃ
କୋଦଣ୍ଡଂ କରପଙ୍କଜେନ ଦଧତୀଂ ପୁଣ୍ଡ୍ରେକ୍ଷୁଦଣ୍ଡୋଦ୍ଭବେ ।
ପୀବର୍ତ୍ତ୍ରାଙ୍କୁଶପାଶପାଣିମରୁଣାମାରକ୍ତ ବସ୍ତ୍ରାବୃତା—
ମାତାମ୍ରାମ୍ବୁଜସଂସ୍ଥିତାଂ ତ୍ରିନୟନାଂ ଚନ୍ଦ୍ରାର୍ଦ୍ଧଚୂଡାଂ ଭଜେ ॥୬॥

ବାଲାର୍କାୟୁତତେଜସାଂ ତ୍ରିନୟନାଂ ରକ୍ତାମ୍ବରୋଲ୍ଲାସିନୀଂ
ନାନାଲଂକୃତରାଜମାନବପୁଷଂ ବାଲେନ୍ଦୁମୁକ୍ତଶେଖରାମ୍ ।
ହସ୍ତୈରିକ୍ଷୁଧନୁଃସୃଣିଂ ସୁମଶରଂ ପାଶଂ ମୁଦା ବିଭ୍ରତୀଂ
ଶ୍ରୀଚକ୍ରସ୍ଥିତସୁନ୍ଦରୀଂ ତ୍ରିଜଗତାମାଧାରଭୂତାଂ ଭଜେ ॥୭॥

## ଲମିତ୍ୟାଦି ପଞ୍ଚପୂଜା—

| | | | |
|---|---|---|---|
| ଲଂ ପୃଥ୍ୱୀ ତତ୍ତ୍ୱାତ୍ମିକାୟୈ | ଶ୍ରୀଲଲିତାମ୍ବିକାୟୈ | ଗନ୍ଧାନ୍ ଧାରୟାମି | ନମଃ |
| ହଂ ଆକାଶ ,, | ,, | ପୁଷ୍ପୈଃ ପୂଜୟାମି | ,, |
| ୟଂ ବାୟୁ ,, | ,, | ଧୂପମ୍ ଆଘ୍ରାପୟାମି | ,, |
| ରଂ ଅଗ୍ନି ,, | ,, | ଦୀପଂ ଦର୍ଶୟାମି | ,, |
| ବଂ ଅମୃତ ,, | ,, | ଅମୃତମହାହାରନ୍ ନୈବେଦ୍ୟାମି | |
| ସଂ ସର୍ବତତ୍ତ୍ୱାତ୍ମିକାୟୈ | ,, | ସର୍ବୋପଚାରପୂଜାଂ ସଂକଲ୍ପୟାମି | ନମଃ |

॥ ଇତି ଶ୍ରୀଦେବ୍ୟାଃ ସ୍ୱାମ୍ବାଭିନ୍ନାଂ ଧ୍ୟାନସ୍ତୁତି ॥



ଶ୍ରୀଃ

# ଶ୍ରୀଲଳିତାସହସ୍ରନାମସ୍ତୋତ୍ରମ୍

ଶ୍ରୀମାତା ଶ୍ରୀମହାରାଜ୍ଞୀ ଶ୍ରୀମତ୍ସିଂହାସନେଶ୍ୱରୀ ।
ଚିଦଗ୍ନିକୁଣ୍ଡସଂଭୂତା ଦେବକାର୍ଯ୍ୟସମୁଦ୍ୟତା ॥ ୧

ଉଦ୍ୟଦ୍ଭାନୁ ସହସ୍ରାଭା ଚତୁର୍ବାହୁସମନ୍ୱିତା ।
ରାଗସ୍ୱରୂପପାଶାଢ୍ୟା କ୍ରୋଧାକାରାଙ୍କୁଶୋଜ୍ଜ୍ୱଳା ॥ ୨

ମନୋରୂପେକ୍ଷୁକୋଦଣ୍ଡା ପଞ୍ଚତନ୍ମାତ୍ରସାୟକା ।
ନିଜାରୁଣପ୍ରଭାପୂରମଜ୍ଜଦ୍‌ବ୍ରହ୍ମାଣ୍ଡମଣ୍ଡଳା ॥ ୩

ଚମ୍ପକାଶୋକପୁନ୍ନାଗସୌଗନ୍ଧିକଲସତ୍କଚା ।
କୁରୁବିନ୍ଦମଣି ଶ୍ରେଣୀକନତ୍କୋଟୀର ମଣ୍ଡିତା ॥ ୪

ଅଷ୍ଟମୀଚନ୍ଦ୍ରବିଭ୍ରାଜଦଳିକସ୍ଥଳ ଶୋଭିତା ।
ମୁଖଚନ୍ଦ୍ରକଳଙ୍କାଭମୃଗନାଭିବିଶେଷକା ॥ ୫

ବଦନସ୍ମରମାଙ୍ଗଲ୍ୟଗୃହତୋରଣଚିଲ୍ଲିକା ।
ବକ୍ତ୍ରଲକ୍ଷ୍ମୀପରୀବାହ ଚଳନ୍ମୀନାଭଲୋଚନା ॥ ୬

ନବଚମ୍ପକପୁଷ୍ପାଭନାସାଦଣ୍ଡବିରାଜିତା ।
ତାରାକାନ୍ତିତିରସ୍କାରିନାସାଭରଣଭାସୁରା ॥ ୭ (୨୦)

କଦମ୍ବମଞ୍ଜରୀକ୍ଳୃପ୍ତକର୍ଣ୍ଣପୂରମନୋହରା ।
ତାଟଙ୍କ ଯୁଗଳୀଭୂତତପନୋଡୁପ ମଣ୍ଡଳା ॥ ୮

ପଦ୍ମରାଗଶିଳାଦର୍ଶପରିଭାବିକପୋଳଭୂଃ ।
ନବବିଦ୍ରୁମବିମ୍ବଶ୍ରୀନ୍ୟକ୍କାରିଦଶନଚ୍ଛଦା ॥ ୯

ଶୁଦ୍ଧବିଦ୍ୟାଙ୍କୁରାକାରଦ୍ୱିଜପଂକ୍ତିଦ୍ୱୟୋଜ୍ଜ୍ୱଳା ।
କର୍ପୂରବୀଟିକାମୋଦସମାକର୍ଷଦ୍ଦିଗନ୍ତରା ॥ ୧୦

ନିଜସଂଲ୍ଲାପମାଧୁର୍ଯ୍ୟବିନିର୍ଭର୍ତ୍ସିତକଚ୍ଛପୀ ।
ମନ୍ଦସ୍ମିତ ପ୍ରଭାପୂରମଜ୍ଜତ୍କାମେଶ ମାନସା ॥ ୧୧

ଅନାକଳିତସାଦୃଶ୍ୟଚିବୁକଶ୍ରୀବିରାଜିତା ।
କାମେଶବଦ୍ଧମାଙ୍ଗଲ୍ୟସୂତ୍ରଶୋଭିତକନ୍ଧରା ॥ ୧୨

କନକାଙ୍ଗଦ କେୟୂରକମନୀୟଭୁଜାନ୍ୱିତା ।
ରତ୍ନଗ୍ରୈବେୟଚିନ୍ତାକଲୋଲମୁକ୍ତାଫଳାନ୍ୱିତା ॥ ୧୩

କାମେଶ୍ୱରପ୍ରେମରତ୍ନମଣିପ୍ରତିପଣସ୍ତନୀ ।
ନାଭ୍ୟାଳବାଳରୋମାଳିଲତାଫଳକୁଚଦ୍ୱୟୀ ॥ ୧୪

ଲକ୍ଷ୍ୟରୋମଲତାଧାରତାସମୁନ୍ନେୟମଧ୍ୟମା ।
ସ୍ତନଭାରଦଳନ୍ମଧ୍ୟପଟ୍ଟବନ୍ଧବଳିତ୍ରୟା ॥ ୧୫

ଅରୁଣାରୁଣ କୌସୁମ୍ଭବସ୍ତ୍ରଭାସ୍ୱତ୍କଟୀତଟୀ ।
ରତ୍ନକିଙ୍କିଣିକାରମ୍ୟରଶନା ଦାମଭୂଷିତା ॥ ୧୬ (୩୮)

କାମେଶଜ୍ଞାତସୌଭାଗ୍ୟମାର୍ଦ୍ଦବୋରୁଦ୍ୱୟାନ୍ୱିତା ।
ମାଣିକ୍ୟମୁକୁଟାକାରଜାନୁଦ୍ୱୟବିରାଜିତା ॥ ୧୭

ଇନ୍ଦ୍ରଗୋପପରିକ୍ଷିପ୍ତସ୍ମରତୂଣାଭଜଂଘିକା ।
ଗୂଢ଼ଗୂଲ୍‌ଫା କୂର୍ମପୃଷ୍ଠଜୟିଷ୍ଣୁପ୍ରପଦାନ୍ୱିତା ॥ ୧୮

ନଖଦୀଧିତିସଂଛନ୍ନନମଜ୍ଜନତମୋଗୁଣା ।
ପଦଦ୍ୱୟପ୍ରଭାଜାଲପରାକୃତସରୋରୁହା ॥ ୧୯

ଶିଞ୍ଜାନମଣିମଞ୍ଜୀରମଣ୍ଡିତଶ୍ରୀପଦାମ୍ବୁଜା ।
ମରାଳୀମନ୍ଦଗମନା ମହାଲାବଣ୍ୟଶେବଧିଃ ॥ ୨୦

ସର୍ବାରୁଣାନବଦ୍ୟାଙ୍ଗୀ ସର୍ବାଭରଣଭୂଷିତା ।
ଶିବକାମେଶ୍ୱରାଙ୍କସ୍ଥା ଶିବା ସ୍ୱାଧୀନବଲ୍ଲଭା ॥ ୨୧

ସୁମେରୁମଧ୍ୟଶୃଙ୍ଗସ୍ଥା ଶ୍ରୀମନ୍ନଗରନାୟିକା ।
ଚିନ୍ତାମଣିଗୃହାନ୍ତସ୍ଥା ପଞ୍ଚବ୍ରହ୍ମାସନସ୍ଥିତା ॥ ୨୨

ମହାପଦ୍ମାଟବୀସଂସ୍ଥା କଦମ୍ବବନବାସିନୀ ।
ସୁଧାସାଗରମଧ୍ୟସ୍ଥା କାମାକ୍ଷୀ କାମଦାୟିନୀ ॥ ୨୩

ଦେବର୍ଷିଗଣସଂଘାତସ୍ତୂୟମାନାତ୍ମବୈଭବା ।
ଭଣ୍ଡାସୁରବଧୋଦ୍ୟୁକ୍ତଶକ୍ତିସେନାସମନ୍ୱିତା ॥ ୨୪

ସମ୍ପତ୍କରୀସମାରୂଢ଼ସିନ୍ଧୁରବ୍ରଜସେବିତା ।
ଅଶ୍ୱାରୂଢ଼ାଧିଷ୍ଠିତାଶ୍ୱକୋଟି କୋଟିଭିରାବୃତା ॥ ୨୫ (୬୭)

ଚକ୍ରରାଜରଥାରୂଢ଼ସର୍ବାୟୁଧପରିଷ୍କୃତା ।
ଗେୟଚକ୍ରରଥାରୂଢ଼ମନ୍ତ୍ରିଣୀପରିସେବିତା ॥ ୨୬

କିରିଚକ୍ରରଥାରୂଢ଼ଦଣ୍ଡନାଥାପୁରସ୍କୃତା ।
ଜ୍ୱାଲାମାଳିନିକାକ୍ଷିପ୍ତବହ୍ନିପ୍ରାକାରମଧ୍ୟଗା ॥ ୨୭

ଭଣ୍ଡସୈନ୍ୟବଧୋଦ୍ୟୁକ୍ତଶକ୍ତିବିକ୍ରମହର୍ଷିତା ।
ନିତ୍ୟା ପରାକ୍ରମାଟୋପନିରୀକ୍ଷଣସମୁତ୍ସୁକା ॥ ୨୮

ଭଣ୍ଡପୁତ୍ରବଧୋଦ୍ୟୁକ୍ତବାଲାବିକ୍ରମନନ୍ଦିତା ।
ମନ୍ତ୍ରିଣ୍ୟମ୍ବାବିରଚିତବିଷଙ୍ଗବଧତୋଷିତା ॥ ୨୯

ବିଶୁକ୍ରପ୍ରାଣହରଣବାରାହୀବୀର୍ଯ୍ୟ ନନ୍ଦିତା ।
କାମେଶ୍ୱରମୁଖାଲୋକକଳ୍ପିତଶ୍ରୀଗଣେଶ୍ୱରା ॥ ୩୦

ମହାଗଣେଶନିର୍ଭିନ୍ନବିଘ୍ନଯନ୍ତ୍ରପ୍ରହର୍ଷିତା ।
ଭଣ୍ଡାସୁରେନ୍ଦ୍ରନିର୍ମୁକ୍ତଶସ୍ତ୍ରପ୍ରତ୍ୟସ୍ତ୍ରବର୍ଷିଣୀ ॥ ୩୧

କରାଙ୍ଗୁଳିନଖୋତ୍ପନ୍ନ ନାରାୟଣ ଦଶାକୃତିଃ ।
ମହାପାଶୁପତାସ୍ତ୍ରାଗ୍ନି ନିର୍ଦ୍ଦଗ୍ଧାସୁରସୈନିକା ॥ ୩୨

କାମେଶ୍ୱରାସ୍ତ୍ରନିର୍ଦ୍ଦଗ୍ଧସଭଣ୍ଡାସୁରଶୂନ୍ୟକା ।
ବ୍ରହ୍ମୋପେନ୍ଦ୍ରମହେନ୍ଦ୍ରାଦିଦେବସଂସ୍ତୁତବୈଭବା ॥ ୩୩

ହରନେତ୍ରାଗ୍ନି ସଂଦଗ୍ଧକାମସଂଜୀବନୌଷଧିଃ ।
ଶ୍ରୀମଦ୍ବାଗ୍ଭବକୂଟୈକସ୍ୱରୂପମୁଖପଙ୍କଜା ॥ ୩୪ (୮୫)

କଣ୍ଠାଧଃକଟିପର୍ଯ୍ୟନ୍ତମଧ୍ୟକୂଟସ୍ୱରୂପିଣୀ ।
ଶକ୍ତିକୂଟୈକତାପନ୍ନକଟ୍ୟଧୋଭାଗଧାରିଣୀ ॥ ୩୫

ମୂଳମନ୍ତ୍ରାତ୍ମିକା ମୂଳକୂଟତ୍ରୟକଳେବରା ।
କୁଳାମୃତୈକରସିକା କୁଳସଂକେତପାଳିନୀ ॥ ୩୬

କୁଳାଙ୍ଗନା କୁଳାନ୍ତସ୍ଥା କୌଳିନୀ କୁଳଯୋଗିନୀ ।
ଅକୁଳା ସମୟାନ୍ତସ୍ଥା ସମୟାଚାରତତ୍ପରା । ॥ ୩୭

ମୂଳାଧାରୈକନିଳୟା ବ୍ରହ୍ମଗ୍ରନ୍ଥିବିଭେଦିନୀ ।
ମଣିପୂରାନ୍ତରୁଦିତା ବିଷ୍ଣୁଗ୍ରନ୍ଥିବିଭେଦିନୀ ॥ ୩୮

ଆଜ୍ଞାଚକ୍ରାନ୍ତରାଳସ୍ଥା ରୁଦ୍ରଗ୍ରନ୍ଥିବିଭେଦିନୀ ।
ସହସ୍ରାରାମ୍ବୁଜାରୂଢ଼ା ସୁଧାସାରାଭିବର୍ଷିଣୀ ॥ ୩୯

ତଡ଼ିଲ୍ଲତା ସମରୁଚିଃ ଷଟ୍‌ଚକ୍ରୋପରିସଂସ୍ଥିତା ।
ମହାସକ୍ତିଃ କୁଣ୍ଡଳିନୀ ବିସତନ୍ତୁତନୀୟସୀ ॥ ୪୦

ଭବାନୀ ଭାବନାଗମ୍ୟା ଭବାରଣ୍ୟକୁଠାରିକା ।
ଭଦ୍ରପ୍ରିୟା ଭଦ୍ରମୂର୍ତ୍ତିର୍ଭକ୍ତସୌଭାଗ୍ୟ ଦାୟିନୀ ॥ ୪୧

ଭକ୍ତିପ୍ରିୟା ଭକ୍ତିଗମ୍ୟା ଭକ୍ତିବଶ୍ୟା ଭୟାପହା ।
ଶାମ୍ଭବୀ ଶାରଦାରାଧ୍ୟା ଶର୍ବାଣୀ ଶର୍ମଦାୟିନୀ ॥ ୪୨

ଶାଙ୍କରୀ ଶ୍ରୀକରୀ ସାଧ୍ୱୀ ଶରଚ୍ଚନ୍ଦ୍ରନିଭାନନା ।
ଶାତୋଦରୀ ଶାନ୍ତିମତୀ ନିରାଧାରା ନିରଞ୍ଜନା ॥ ୪୩ (୧୩୫)

ନିର୍ଲେପା ନିର୍ମଳା ନିତ୍ୟା ନିରାକାରା ନିରାକୁଳା ।
ନିର୍ଗୁଣା ନିଷ୍କଳା ଶାନ୍ତା ନିଷ୍କାମା ନିରୁପପ୍ଲବା ॥ ୪୪

ନିତ୍ୟମୁକ୍ତା ନିର୍ବିକାରା ନିଷ୍ପ୍ରପଞ୍ଚା ନିରାଶ୍ରୟା ।
ନିତ୍ୟଶୁଦ୍ଧା ନିତ୍ୟବୁଦ୍ଧା ନିରବଦ୍ୟା ନିରନ୍ତରା ॥ ୪୫

ନିଷ୍କାରଣା ନିଷ୍କଳଙ୍କା ନିରୁପାଧିର୍ନିରୀଶ୍ୱରା ।
ନୀରାଗା ରାଗମଥନୀ ନିର୍ମଦା ମଦନାଶିନୀ ॥ ୪୬

ନିଶ୍ଚିନ୍ତା ନିରହଂକାରା ନିର୍ମୋହା ମୋହନାଶିନୀ ।
ନିର୍ମମା ମମତାହନ୍ତ୍ରୀ ନିଷ୍ପାପା ପାପନାଶିନୀ ॥ ୪୭

ନିଷ୍କ୍ରୋଧା କ୍ରୋଧଶମନୀ ନିର୍ଲୋଭା ଲୋଭନାଶିନୀ ।
ନିଃସଂଶୟା ସଂଶୟଘ୍ନୀ ନିର୍ଭବା ଭବନାଶିନୀ ॥ ୪୮

ନିର୍ବିକଳ୍ପା ନିରାବାଧା ନିର୍ଭେଦା ଭେଦନାଶିନୀ ।
ନିର୍ନାଶା ମୃତ୍ୟୁମଥନୀ ନିଷ୍କ୍ରିୟା ନିଷ୍ପରିଗ୍ରହା ॥ ୪୯

ନିସ୍ତୁଲା ନୀଲଚିକୁରା ନିରପାୟା ନିରତ୍ୟୟା ।
ଦୁର୍ଲଭା ଦୁର୍ଗମା ଦୁର୍ଗା ଦୁଃଖହନ୍ତ୍ରୀ ସୁଖପ୍ରଦା ॥ ୫୦

ଦୁଷ୍ଟଦୂରା ଦୁରାଚାରଶମନୀ ଦୋଷବର୍ଜ୍ଜିତା ।
ସର୍ବଜ୍ଞା ସାନ୍ଦ୍ରକରୁଣା ସମାନାଧିକବର୍ଜ୍ଜିତା ॥ ୫୧

ସର୍ବଶକ୍ତିମୟୀ ସର୍ବମଙ୍ଗଳା ସଦ୍‌ଗତିପ୍ରଦା ।
ସର୍ବେଶ୍ୱରୀ ସର୍ବମୟୀ ସର୍ବମନ୍ତ୍ରସ୍ୱରୂପିଣୀ ॥ ୫୨ (୧୦୪)

ସର୍ବଯନ୍ତ୍ରାତ୍ମିକା ସର୍ବତନ୍ତ୍ରରୂପା ମନୋନ୍ମନୀ ।
ମାହେଶ୍ୱରୀ ମହାଦେବୀ ମହାଲକ୍ଷ୍ମୀର୍ମୃଡ଼ପ୍ରିୟା ॥ ୫୩

ମହାରୂପା ମହାପୂଜ୍ୟା ମହାପାତକନାଶିନୀ ।
ମହାମାୟା ମହାସତ୍ତ୍ୱା ମହାଶକ୍ତିର୍ମହାରତିଃ ॥ ୫୪

ମହାଭୋଗା ମହୈଶ୍ୱର୍ଯ୍ୟା ମହାବୀର୍ଯ୍ୟା ମହାବଳା ।
ମହାବୁଦ୍ଧିର୍ମହାସିଦ୍ଧିର୍ମହାଯୋଗେଶ୍ୱରେଶ୍ୱରୀ ॥ ୫୫

ମହାତନ୍ତ୍ରା ମହାମନ୍ତ୍ରା ମହାଯନ୍ତ୍ରା ମହାସନା ।
ମହାଯାଗକ୍ରମାରାଧ୍ୟା ମହାଭୈରବପୂଜିତା ॥ ୫୬

ମହେଶ୍ୱରମହାକଳ୍ପ ମହାତାଣ୍ଡବସାକ୍ଷିଣୀ ।
ମହାକାମେଶମହିଷୀ ମହାତ୍ରିପୁରସୁନ୍ଦରୀ ॥ ୫୭

ଚତୁଃଷଷ୍ଟ୍ୟୁପଚାରାଢ୍ୟା ଚତୁଃଷଷ୍ଟିକଳାମୟୀ ।
ମହାଚତୁଃଷଷ୍ଟିକୋଟି ଯୋଗିନୀଗଣସେବିତା ॥ ୫୮

ମନୁବିଦ୍ୟା ଚନ୍ଦ୍ରବିଦ୍ୟା ଚନ୍ଦ୍ରମଣ୍ଡଳମଧ୍ୟଗା ।
ଚାରୁରୂପା ଚାରୁହାସା ଚାରୁଚନ୍ଦ୍ରକଳାଧରା ॥ ୫୯

ଚରାଚରଜଗନ୍ନାଥା ଚକ୍ରରାଜନିକେତନା ।
ପାର୍ବତୀ ପଦ୍ମନୟନା ପଦ୍ମରାଗସମପ୍ରଭା ॥ ୬୦

ପଞ୍ଚପ୍ରେତାସନାସୀନା ପଞ୍ଚବ୍ରହ୍ମସ୍ୱରୂପିଣୀ ।
ଚିନ୍ମୟୀ ପରମାନନ୍ଦା ବିଜ୍ଞାନଘନରୂପିଣୀ ॥ ୬୧ (୧୨୩)

ଧ୍ୟାନଧ୍ୟାତୃଧ୍ୟେୟରୂପା ଧର୍ମାଧର୍ମବିବର୍ଜିତା ।
ବିଶ୍ୱରୂପା ଜାଗରଣୀ ସ୍ୱପନ୍ତୀ ତୈଜସାତ୍ମିକା ॥ ୭୨

ସୁପ୍ତା ପ୍ରାଜ୍ଞାତ୍ମିକା ତୁର୍ଯ୍ୟା ସର୍ବାବସ୍ଥାବିବର୍ଜିତା ।
ସୃଷ୍ଟିକର୍ତ୍ରୀ ବ୍ରହ୍ମରୂପା ଗୋପ୍ତ୍ରୀ ଗୋବିନ୍ଦରୂପିଣୀ ॥ ୭୩

ସଂହାରିଣୀ ରୁଦ୍ରରୂପା ତିରୋଧାନକରୀଶ୍ୱରୀ ।
ସଦାଶିବାନୁଗ୍ରହଦା ପଞ୍ଚକୃତ୍ୟପରାୟଣା ॥ ୭୪

ଭାନୁମଣ୍ଡଳମଧ୍ୟସ୍ଥା ଭୈରବୀ ଭଗମାଳିନୀ ।
ପଦ୍ମାସନା ଭଗବତୀ ପଦ୍ମନାଭସହୋଦରୀ ॥ ୭୫

ଉନ୍ମେଷନିମିଷୋତ୍ପନ୍ନବିପନ୍ନଭୁବନାବଳୀ ।
ସହସ୍ରଶୀର୍ଷବଦନା ସହସ୍ରାକ୍ଷୀ ସହସ୍ରପାତ୍ ॥ ୭୬

ଆବ୍ରହ୍ମକୀଟଜନନୀ ବର୍ଣ୍ଣାଶ୍ରମବିଧାୟିନୀ ।
ନିଜାଜ୍ଞାରୂପନିଗମା ପୁଣ୍ୟାପୁଣ୍ୟଫଳପ୍ରଦା ॥ ୭୭

ଶ୍ରୁତିସୀମନ୍ତସିନ୍ଦୂରୀକୃତପାଦାବ୍ଜଧୂଳିକା ।
ସକଳାଗମସଂଦୋହଶୁକ୍ତିସଂପୁଟମୌକ୍ତିକା ॥ ୭୮

ପୁରୁଷାର୍ଥପ୍ରଦା ପୂର୍ଣ୍ଣା ଭୋଗିନୀ ଭୁବନେଶ୍ୱରୀ ।
ଅମ୍ବିକାନାଦିନିଧନା ହରିବ୍ରହ୍ମେନ୍ଦ୍ରସେବିତା ॥ ୭୯

ନାରାୟଣୀ ନାଦରୂପା ନାମରୂପବିବର୍ଜ୍ଜିତା ।
ହ୍ରୀଂକାରୀ ହ୍ରୀମତୀ ହୃଦ୍ୟା ହେୟୋପାଦେୟବର୍ଜ୍ଜିତା ॥ ୮୦

(୩୦୪)

ରାଜରାଜାର୍ଚ୍ଚିତା ରାଜ୍ଞୀ ରମ୍ୟା ରାଜୀବଲୋଚନା ।
ରଞ୍ଜନୀ ରମଣୀ ରସ୍ୟା ରଣତ୍କିଙ୍କିଣୀମେଖଳା ॥ ୭୧

ରମା ରାକେନ୍ଦୁବଦନା ରତିରୂପା ରତିପ୍ରିୟା ।
ରକ୍ଷାକରୀ ରାକ୍ଷସଘ୍ନୀ ରାମା ରମଣଲମ୍ପଟା ॥ ୭୨

କାମ୍ୟା କାମ୍ୟକଳାରୂପା କଦମ୍ବକୁସୁମପ୍ରିୟା ।
କଲ୍ୟାଣୀ ଜଗତୀକନ୍ଦା କରୁଣାରସସାଗରା ॥ ୭୩

କଳାବତୀ କଳାଲାପା କାନ୍ତା କାଦମ୍ବରୀପ୍ରିୟା ।
ବରଦା ବାମନୟନା ବାରୁଣୀମଦବିହ୍ୱଳା ॥ ୭୪

ବିଶ୍ୱାଧିକା ବେଦବେଦ୍ୟା ବିନ୍ଧ୍ୟାଚଳନିବାସିନୀ ।
ବିଧାତ୍ରୀ ବେଦଜନନୀ ବିଷ୍ଣୁମାୟା ବିଳାସିନୀ ॥ ୭୫

କ୍ଷେତ୍ରସ୍ୱରୂପା କ୍ଷେତ୍ରେଶୀ କ୍ଷେତ୍ରକ୍ଷେତ୍ରଜ୍ଞପାଳିନୀ ।
କ୍ଷୟବୃଦ୍ଧିବିନିର୍ମୁକ୍ତା କ୍ଷେତ୍ରପାଳସମର୍ଚ୍ଚିତା ॥ ୭୬

ବିଜୟା ବିମଳା ବନ୍ଦ୍ୟା ବନ୍ଦାରୁଜନବତ୍ସଳା ।
ବାଗ୍‌ବାଦିନୀ ବାମକେଶୀ ବହ୍ନିମଣ୍ଡଳବାସିନୀ ୭୭

ଭକ୍ତିମତ୍କଳ୍ପଲତିକା ପଶୁପାଶବିମୋଚନୀ ।
ସଂହୃତାଶେଷପାଷଣ୍ଡା ସଦାଚାର ପ୍ରବର୍ତ୍ତିକା ॥ ୭୮

ତାପତ୍ରୟାଗ୍ନିସଂତପ୍ତସମାହ୍ଲାଦନଚନ୍ଦ୍ରିକା ।
ତରୁଣୀ ତାପସାରାଧ୍ୟା ତନୁମଧ୍ୟା ତମୋଽପହା ॥ ୭୯ (୫୭୧)

ଚିତିସ୍ତତ୍ପଦଲକ୍ଷ୍ୟାର୍ଥା ଚିଦେକରସରୂପିଣୀ ।
ସ୍ୱାତ୍ମାନନ୍ଦଲବୀଭୂତବ୍ରହ୍ମାଦ୍ୟାନନ୍ଦସଂତତିଃ ॥ ୮୦

ପରା ପ୍ରତ୍ୟକ୍ଚିତୀରୂପା ପଶ୍ୟନ୍ତୀ ପରଦେବତା ।
ମଧ୍ୟମା ବୈଖରୀରୂପା ଭକ୍ତମାନସହଂସିକା ॥ ୮୧

କାମେଶ୍ୱରପ୍ରାଣନାଡ଼ୀ କୃତଜ୍ଞା କାମପୂଜିତା ।
ଶୃଙ୍ଗାରରସସଂପୂର୍ଣ୍ଣା ଜୟା ଜାଳନ୍ଧରସ୍ଥିତା ॥ ୮୨

ଓଡ୍ୟାଣପୀଠନିଲୟା ବିନ୍ଦୁମଣ୍ଡଳବାସିନୀ ।
ରହୋଯାଗକ୍ରମାରାଧ୍ୟା ରହସ୍ତର୍ପଣତର୍ପିତା ॥ ୮୩

ସଦ୍ୟଃପ୍ରସାଦିନୀ ବିଶ୍ୱସାକ୍ଷିଣୀ ସାକ୍ଷିବର୍ଜ୍ଜିତା ।
ଷଡ଼ଙ୍ଗଦେବତାଯୁକ୍ତା ଷାଡ଼୍ଗୁଣ୍ୟପରିପୂରିତା ॥ ୮୪

ନିତ୍ୟକ୍ଳିନ୍ନା ନିରୁପମା ନିର୍ବାଣସୁଖଦାୟିନୀ ।
ନିତ୍ୟାଷୋଡ଼ଶିକାରୂପା ଶ୍ରୀକଣ୍ଠାର୍ଦ୍ଧଶରୀରିଣୀ ॥ ୮୫

ପ୍ରଭାବତୀ ପ୍ରଭାରୂପା ପ୍ରସିଦ୍ଧା ପରମେଶ୍ୱରୀ ।
ମୂଳପ୍ରକୃତିରବ୍ୟକ୍ତା ବ୍ୟକ୍ତାବ୍ୟକ୍ତସ୍ୱରୂପିଣୀ ॥ ୮୬

ବ୍ୟାପିନୀ ବିବିଧାକାରା ବିଦ୍ୟାବିଦ୍ୟାସ୍ୱରୂପିଣୀ ।
ମହାକାମେଶନୟନକୁମୁଦାହ୍ଲାଦକୌମୁଦୀ ॥ ୮୭

ଭକ୍ତହାର୍ଦ୍ଦତମୋଭେଦଭାନୁମଦ୍ଭାନୁସଂତତିଃ ।
ଶିବଦୂତୀ ଶିବାରାଧ୍ୟା ଶିବମୂର୍ତ୍ତିଃ ଶିବଙ୍କରୀ ॥ ୮୮ (୪୦୮)

ଶିବପ୍ରିୟା ଶିବପରା ଶିଷ୍ଟେଷ୍ଟା ଶିଷ୍ଟପୂଜିତା ।
ଅପ୍ରମେୟା ସ୍ୱପ୍ରକାଶା ମନୋବାଚାମଗୋଚରା ।। ୮୯

ଚିଚ୍ଛକ୍ତିଶ୍ଚେତନାରୂପା ଜଡ଼ଶକ୍ତିର୍ଜଡ଼ାତ୍ମିକା ।
ଗାୟତ୍ରୀ ବ୍ୟାହୃତିଃ ସନ୍ଧ୍ୟା ଦ୍ୱିଜବୃନ୍ଦନିଷେବିତା ।। ୯୦

ତତ୍ତ୍ୱାସନା ତତ୍ତ୍ୱମୟୀ ପଞ୍ଚକୋଶାନ୍ତରସ୍ଥିତା ।
ନିଃସୀମମହିମା ନିତ୍ୟଯୌବନା ମଦଶାଳିନୀ ।। ୯୧

ମଦଘୂର୍ଣ୍ଣିତରକ୍ତାକ୍ଷୀ ମଦପାଟଳଗଣ୍ଡଭୂଃ ।
ଚନ୍ଦନଦ୍ରବଦିଗ୍ଧାଙ୍ଗୀ ଚାମ୍ପେୟକୁସୁମପ୍ରିୟା ।। ୯୨

କୁଶଳା କୋମଳାକାରା କୁରୁକୁଲ୍ଲା କୁଳେଶ୍ୱରୀ ।
କୁଳକୁଣ୍ଡାଳୟା କୌଳମାର୍ଗତତ୍ପରସେବିତା ।। ୯୩

କୁମାରଗଣନାଥାମ୍ବା ତୁଷ୍ଟିଃ ପୁଷ୍ଟିର୍ମତିର୍ଧୃତିଃ ।
ଶାନ୍ତିଃ ସ୍ୱସ୍ତିମତୀ କାନ୍ତିର୍ନନ୍ଦିନୀ ବିଘ୍ନନାଶିନୀ ।। ୯୪

ତେଜୋବତୀ ତ୍ରିନୟନା ଲୋଲାକ୍ଷୀକାମରୂପିଣୀ ।
ମାଲିନୀ ହଂସିନୀ ମାତା ମଲୟାଚଳବାସିନୀ ।। ୯୫

ସୁମୁଖୀ ନଳିନୀ ସୁଭ୍ରୂଃ ଶୋଭନା ସୁରନାୟିକା ।
କାଳକଣ୍ଠୀ କାନ୍ତିମତୀ କ୍ଷୋଭିଣୀ ସୂକ୍ଷ୍ମରୂପିଣୀ ।। ୯୬

ବଜ୍ରେଶ୍ୱରୀ ବାମଦେବୀ ବୟୋଽବସ୍ଥାବିବର୍ଜିତା ।
ସିଦ୍ଧେଶ୍ୱରୀ ସିଦ୍ଧବିଦ୍ୟା ସିଦ୍ଧମାତା ଯଶସ୍ୱିନୀ ।। ୯୭ (୪୭୪)

ବିଶୁଦ୍ଧିଚକ୍ରନିଲୟାଽରକ୍ତବର୍ଣ୍ଣା ତ୍ରିଲୋଚନା ।
ଖଟ୍ୱାଙ୍ଗାଦିପ୍ରହରଣା ବଦନୈକସମନ୍ୱିତା ॥ ୯୮

ପାୟସାନ୍ନପ୍ରିୟା ତ୍ୱକ୍‌ସ୍ଥା ପଶୁଲୋକଭୟଙ୍କରୀ ।
ଅମୃତାଦିମହାଶକ୍ତିସଂବୃତା ଡାକିନୀଶ୍ୱରୀ ॥ ୯୯

ଅନାହତାବ୍‌ଜନିଲୟା ଶ୍ୟାମାଭା ବଦନଦ୍ୱୟା ।
ଦଂଷ୍ଟ୍ରୋଜ୍ଜ୍ୱଳାଽକ୍ଷମାଳାଦିଧରା ରୁଧିରସଂସ୍ଥିତା ॥ ୧୦୦

କାଳରାତ୍ର୍ୟାଦିଶକ୍ତ୍ୟୌଘବୃତା ସ୍ନିଗ୍ଧୌଦନପ୍ରିୟା ।
ମହାବୀରେନ୍ଦ୍ରବରଦା ରାକିଣ୍ୟମ୍ବାସ୍ୱରୂପିଣୀ ॥ ୧୦୧

ମଣିପୂରାବ୍‌ଜନିଲୟା ବଦନତ୍ରୟସଂଯୁତା ।
ବଜ୍ରାଦିକାୟୁଧୋପେତା ଡାମର୍ଯ୍ୟାଦିଭିରାବୃତା ॥ ୧୦୨

ରକ୍ତବର୍ଣ୍ଣା ମାଂସନିଷ୍ଠା ଗୁଡାନ୍ନପ୍ରୀତମାନସା ।
ସମସ୍ତଭକ୍ତସୁଖଦା ଲାକିନ୍ୟମ୍ବାସ୍ୱରୂପିଣୀ ॥ ୧୦୩

ସ୍ୱାଧିଷ୍ଠାନାମ୍ବୁଜଗତା ଚତୁର୍ବକ୍ତ୍ରମନୋହରା ।
ଶୂଳାଦ୍ୟାୟୁଧସଂପନ୍ନା ପୀତବର୍ଣ୍ଣାତିଗର୍ବିତା ॥ ୧୦୪

ମେଦୋନିଷ୍ଠା ମଧୁପ୍ରୀତା ବନ୍ଦିନ୍ୟାଦିସମନ୍ୱିତା ।
ଦଧ୍ୟନ୍ନାସକ୍ତହୃଦୟା କାକିନୀରୂପଧାରିଣୀ ॥ ୧୦୫

ମୂଳାଧାରାମ୍ବୁଜାରୂଢ଼ା ପଞ୍ଚବକ୍ତ୍ରାସ୍ଥିସଂସ୍ଥିତା ।
ଅଙ୍କୁଶାଦିପ୍ରହରଣା ବରଦାଦିନିଷେବିତା ॥ ୧୦୬ (୫୧୮)

ମୁଦ୍‌ଗୌଦନାସକ୍ତଚତ୍ତା ସାକନ୍ୟମ୍ବାସ୍ୱରୂପିଣୀ ।
ଆଜ୍ଞାଚକ୍ରାବ୍‌ଜନିଲୟା ଶୁକ୍ଳବର୍ଣ୍ଣା ଷଡ଼ାନନା ॥ ୧୦୭

ମଜ୍ଜାସଂସ୍ଥା ହଂସବତୀମୁଖ୍ୟଶକ୍ତିସମନ୍ୱିତା ।
ହରିଦ୍ରାନ୍ନୈକରସିକା ହାକିନୀରୂପଧାରିଣୀ ॥ ୧୦୮

ସହସ୍ରଦଳପଦ୍ମସ୍ଥା ସର୍ବବର୍ଣ୍ଣୋପଶୋଭିତା ।
ସର୍ବାୟୁଧଧରା ଶୁକ୍ଳସଂସ୍ଥିତା ସର୍ବତୋମୁଖୀ ॥ ୧୦୯

ସର୍ବୌଦନପ୍ରୀତଚିତ୍ତା ୟାକିନ୍ୟମ୍ବାସ୍ୱରୂପିଣୀ ।
ସ୍ୱାହା ସ୍ୱଧାଽମତିର୍ମେଧା ଶ୍ରୁତିଃ ସ୍ମୃତିରନୁତ୍ତମା ॥ ୧୧୦

ପୁଣ୍ୟକୀର୍ତ୍ତିଃ ପୁଣ୍ୟଲଭ୍ୟା ପୁଣ୍ୟଶ୍ରବଣକୀର୍ତ୍ତନା ।
ପୁଲୋମଜାର୍ଚ୍ଚିତା ବନ୍ଧମୋଚନୀ ବର୍ବରାଲକା ॥ ୧୧୧

ବିମର୍ଶରୂପିଣୀ ବିଦ୍ୟା ବିୟଦାଦିଜଗତ୍‌ପ୍ରସୂଃ ।
ସର୍ବବ୍ୟାଧିପ୍ରଶମନୀ ସର୍ବମୃତ୍ୟୁନିବାରିଣୀ ॥ ୧୧୨

ଅଗ୍ରଗଣ୍ୟାଚିନ୍ତ୍ୟରୂପା କଳିକଲ୍ମଷନାଶିନୀ ।
କାତ୍ୟାୟନୀ କାଳହନ୍ତ୍ରୀ କମଳାକ୍ଷନିଷେବିତା ॥ ୧୧୩

ତାମ୍ବୂଲପୂରିତମୁଖୀ ଦାଡ଼ିମୀକୁସୁମପ୍ରଭା ।
ମୃଗାକ୍ଷୀ ମୋହିନୀ ମୁଖ୍ୟା ମୃଡ଼ାନୀ ମିତ୍ରରୂପିଣୀ ॥ ୧୧୪

ନିତ୍ୟତୃପ୍ତା ଭକ୍ତନିଧିର୍ନିୟନ୍ତ୍ରୀ ନିଖିଳେଶ୍ୱରୀ ।
ମୈତ୍ର୍ୟାଦିବାସନାଲଭ୍ୟା ମହାପ୍ରଳୟସାକ୍ଷିଣୀ ॥ ୧୧୫(+୭୧)

ପରାଶକ୍ତିଃ ପରାନିଷ୍ଠା ପ୍ରଜ୍ଞାନଘନରୂପିଣୀ ।
ମାଧ୍ୱୀପାନାଲସା ମତ୍ତା ମାତୃକାବର୍ଣ୍ଣରୂପିଣୀ ॥ ୧୧୬

ମହାକୈଳାସନିଳୟା ମୃଣାଳମୃଦୁଦୋର୍ଲତା ।
ମହନୀୟା ଦୟାମୂର୍ତ୍ତିର୍ମହାସାମ୍ରାଜ୍ୟଶାଳିନୀ ॥ ୧୧୭

ଆତ୍ମବିଦ୍ୟା ମହାବିଦ୍ୟା ଶ୍ରୀବିଦ୍ୟା କାମସେବିତା ।
ଶ୍ରୀଷୋଡ଼ଶାକ୍ଷରୀବିଦ୍ୟା ତ୍ରିକୂଟା କାମକୋଟିକା ॥ ୧୧୮

କଟାକ୍ଷକିଙ୍କରୀଭୂତକମଳାକୋଟିସେବିତା ।
ଶିରଃସ୍ଥିତା ଚନ୍ଦ୍ରନିଭା ଭାଲସ୍ଥେନ୍ଦ୍ରଧନୁଃପ୍ରଭା ॥ ୧୧୯

ହୃଦୟସ୍ଥା ରବିପ୍ରଖ୍ୟା ତ୍ରିକୋଣାନ୍ତରଦୀପିକା ।
ଦାକ୍ଷାୟଣୀ ଦୈତ୍ୟହନ୍ତ୍ରୀ ଦକ୍ଷଯଜ୍ଞବିନାଶିନୀ ॥ ୧୨୦

ଦରାନ୍ଦୋଳିତଦୀର୍ଘାକ୍ଷୀ ଦରହାସୋଜ୍ଜ୍ୱଳନ୍ମୁଖୀ ।
ଗୁରୁମୂର୍ତ୍ତିର୍ଗୁଣନିଧିର୍ଗୋମାତା ଗୁହଜନ୍ମଭୂଃ ॥ ୧୨୧

ଦେବେଶୀ ଦଣ୍ଡନୀତିସ୍ଥା ଦହରାକାଶରୂପିଣୀ ।
ପ୍ରତିପନ୍ମୁଖ୍ୟରାକାନ୍ତତିଥିମଣ୍ଡଳପୂଜିତା ॥ ୧୨୨

କଳାତ୍ମିକା କଳାନାଥା କାବ୍ୟାଲାପବିନୋଦିନୀ ।
ସଚାମରରମାବାଣୀସବ୍ୟଦକ୍ଷିଣସେବିତା ॥ ୧୨୩

ଆଦିଶକ୍ତିରମେୟାତ୍ମା ପରମା ପାବନାକୃତିଃ ।
ଅନେକକୋଟିବ୍ରହ୍ମାଣ୍ଡଜନନୀ ଦିବ୍ୟବିଗ୍ରହା ॥ ୧୨୪ (୬୬୧)

କ୍ଲୀଂକାରୀ କେବଳା ଗୁହ୍ୟା କୈବଲ୍ୟପଦଦାୟିନୀ ।
ତ୍ରିପୁରା ତ୍ରିଜଗଦ୍‌ବନ୍ଦ୍ୟା ତ୍ରିମୂର୍ତ୍ତିସ୍ତ୍ରିଦଶେଶ୍ୱରୀ ॥ ୧୨୫

ତ୍ର୍ୟକ୍ଷରୀ ଦିବ୍ୟଗନ୍ଧାଢ଼୍ୟା ସିନ୍ଦୂରତିଲକାଞ୍ଚିତା ।
ଉମା ଶୈଳେନ୍ଦ୍ରତନୟା ଗୌରୀ ଗନ୍ଧର୍ବସେବିତା ॥ ୧୨୬

ବିଶ୍ୱଗର୍ଭା ସ୍ୱର୍ଣ୍ଣଗର୍ଭାଽବରଦା ବାଗଧୀଶ୍ୱରୀ ।
ଧ୍ୟାନଗମ୍ୟାଽପରିଚ୍ଛେଦ୍ୟା ଜ୍ଞାନଦା ଜ୍ଞାନବିଗ୍ରହା ॥ ୧୨୭

ସର୍ବବେଦାନ୍ତସଂବେଦ୍ୟା ସତ୍ୟାନନ୍ଦସ୍ୱରୂପିଣୀ ।
ଲୋପାମୁଦ୍ରାର୍ଚ୍ଚିତା ଲୀଳାକ୍ଲୃପ୍ତବ୍ରହ୍ମାଣ୍ଡମଣ୍ଡଳା ॥ ୧୨୮

ଅଦୃଶ୍ୟା ଦୃଶ୍ୟରହିତା ବିଜ୍ଞାତ୍ରୀ ବେଦ୍ୟବର୍ଜିତା ।
ଯୋଗିନୀ ଯୋଗଦା ଯୋଗ୍ୟା ଯୋଗାନନ୍ଦା ଯୁଗନ୍ଧରା ॥୧୨୯

ଇଚ୍ଛାଶକ୍ତି-ଜ୍ଞାନଶକ୍ତି-କ୍ରିୟାଶକ୍ତିସ୍ୱରୂପିଣୀ ।
ସର୍ବାଧାରା ସୁପ୍ରତିଷ୍ଠା ସଦସଦ୍ରୂପଧାରିଣୀ ॥ ୧୩୦

ଅଷ୍ଟମୂର୍ତ୍ତିରଜାଜୈତ୍ରୀ ଲୋକଯାତ୍ରାବିଧାୟିନୀ ।
ଏକାକିନୀ ଭୂମରୂପା ନିର୍ଦ୍ୱୈତା ଦ୍ୱୈତବର୍ଜ୍ଜିତା ॥ ୧୩୧

ଅନ୍ନଦା ବସୁଦା ବୃଦ୍ଧା ବ୍ରହ୍ମାତ୍ମୈକ୍ୟସ୍ୱରୂପିଣୀ ।
ବୃହତୀ ବ୍ରାହ୍ମଣୀ ବ୍ରାହ୍ମୀ ବ୍ରହ୍ମାନନ୍ଦା ବଳିପ୍ରିୟା ॥ ୧୩୨

ଭାଷାରୂପା ବୃହତ୍ସେନା ଭାବାଭାବବିବର୍ଜ୍ଜିତା ।
ସୁଖାରାଧ୍ୟା ଶୁଭକରୀ ଶୋଭନାସୁଲଭାଗତିଃ ॥ ୧୩୩(ଶ୍ଳୋ ୩)

ରାଜରାଜେଶ୍ୱରୀ ରାଜ୍ୟଦାୟିନୀ ରାଜ୍ୟବଲ୍ଲଭା ।
ରାଜତ୍କୃପା ରାଜପୀଠନିବେଶିତନିଜାଶ୍ରିତା ।। ୧୩୪

ରାଜ୍ୟଲକ୍ଷ୍ମୀଃ କୋଶନାଥା ଚତୁରଙ୍ଗବଲେଶ୍ୱରୀ ।
ସାମ୍ରାଜ୍ୟଦାୟିନୀ ସତ୍ୟସନ୍ଧା ସାଗରମେଖଳା ।। ୧୩୫

ଦୀକ୍ଷିତା ଦୈତ୍ୟଶମନୀ ସର୍ବଲୋକବଶଂକରୀ ।
ସର୍ବାର୍ଥଦାତ୍ରୀ ସାବିତ୍ରୀ ସଚ୍ଚିଦାନନ୍ଦରୂପିଣୀ ।। ୧୩୬

ଦେଶକାଳାପରିଚ୍ଛିନ୍ନା ସର୍ବଗା ସର୍ବମୋହିନୀ ।
ସରସ୍ୱତୀ ଶାସ୍ତ୍ରମୟୀ ଗୁହାମ୍ବା ଗୁହ୍ୟରୂପିଣୀ ।। ୧୩୭

ସର୍ବୋପାଧିବିନିର୍ମୁକ୍ତା ସଦାଶିବପତିବ୍ରତା ।
ସଂପ୍ରଦାୟେଶ୍ୱରୀ ସାଧ୍ୱୀ ଗୁରୁମଣ୍ଡଳରୂପିଣୀ ।। ୧୩୮

କୁଲୋତ୍ତୀର୍ଣ୍ଣା ଭଗାରାଧ୍ୟା ମାୟା ମଧୁମତୀ ମହୀ ।
ଗଣାମ୍ବା ଗୁହ୍ୟକାରାଧ୍ୟା କୋମଳାଙ୍ଗୀ ଗୁରୁପ୍ରିୟା ।। ୧୩୯

ସ୍ୱତନ୍ତ୍ରା ସର୍ବତନ୍ତ୍ରେଶୀ ଦକ୍ଷିଣା ମୂର୍ତ୍ତିରୂପିଣୀ ।
ସନକାଦିସମାରାଧ୍ୟା ଶିବଜ୍ଞାନପ୍ରଦାୟିନୀ ।। ୧୪୦

ଚିତ୍କଳାନନ୍ଦକଳିକା ପ୍ରେମରୂପା ପ୍ରିୟଙ୍କରୀ ।
ନାମପାରାୟଣପ୍ରୀତା ନନ୍ଦିବିଦ୍ୟା ନଟେଶ୍ୱରୀ ।। ୧୪୧

ମିଥ୍ୟାଜଗଦଧିଷ୍ଠାନା ମୁକ୍ତିଦା ମୁକ୍ତିରୂପିଣୀ ।
ଲାସ୍ୟପ୍ରିୟା ଲୟକରୀ ଲଜ୍ଜା ରମ୍ଭାଦିବନ୍ଦିତା ।। ୧୪୨(୭୪୧)

ଭବଦାବସୁଧାବୃଷ୍ଟିଃ ପାପାରଣ୍ୟଦବାନଳା ।
ଦୌର୍ଭାଗ୍ୟତୂଳବାତୂଳା ଜରାଧ୍ୱାନ୍ତରବିପ୍ରଭା ॥ ୧୪୩

ଭାଗ୍ୟାବ୍ଧିଚନ୍ଦ୍ରିକା ଭକ୍ତଚିତ୍ତକେକିଘନାଘନା ।
ରୋଗପର୍ବତଦମ୍ଭୋଳିର୍ମୃତ୍ୟୁଦାରୁକୁଠାରିକା ॥ ୧୪୪

ମହେଶ୍ୱରୀ ମହାକାଳୀ ମହାଗ୍ରାସା ମହାଶନା ।
ଅପର୍ଣ୍ଣା ଚଣ୍ଡିକା ଚଣ୍ଡମୁଣ୍ଡାସୁରନିଷୂଦନୀ ॥ ୧୪୫

କ୍ଷରାକ୍ଷରାତ୍ମିକା ସର୍ବଲୋକେଶୀ ବିଶ୍ୱଧାରିଣୀ ।
ତ୍ରିବର୍ଗଦାତ୍ରୀ ସୁଭଗା ତ୍ର୍ୟମ୍ବକା ତ୍ରିଗୁଣାତ୍ମିକା ॥ ୧୪୬

ସ୍ୱର୍ଗାପବର୍ଗଦା ଶୁଦ୍ଧା ଜପାପୁଷ୍ପନିଭାକୃତିଃ ।
ଓଜୋବତୀ ଦ୍ୟୁତିଧରା ଯଜ୍ଞରୂପା ପ୍ରିୟବ୍ରତା ॥ ୧୪୭

ଦୁରାରାଧ୍ୟା ଦୁରାଧର୍ଷା ପାଟଳୀକୁସୁମପ୍ରିୟା ।
ମହତୀ ମେରୁନିଲୟା ମନ୍ଦାରକୁସୁମପ୍ରିୟା ॥ ୧୪୮

ବୀରାରାଧ୍ୟା ବିରାଡ୍ରୂପା ବିରଜା ବିଶ୍ୱତୋମୁଖୀ ।
ପ୍ରତ୍ୟଗ୍ରୂପା ପରାକାଶା ପ୍ରାଣଦା ପ୍ରାଣରୂପିଣୀ ॥ ୧୪୯

ମାର୍ତ୍ତଣ୍ଡଭୈରବାରାଧ୍ୟା ମନ୍ତ୍ରିଣୀନ୍ୟସ୍ତରାଜ୍ୟଧୂଃ ।
ତ୍ରିପୁରେଶୀ ଜୟତ୍ସେନା ନିସ୍ତ୍ରୈଗୁଣ୍ୟା ପରାପରା ॥ ୧୫୦

ସତ୍ୟଜ୍ଞାନାନନ୍ଦରୂପା ସାମରସ୍ୟପରାୟଣା ।
କପର୍ଦ୍ଦିନୀ କଳାମାଳା କାମଧୁକ୍‌କାମରୂପିଣୀ ॥ ୧୫୧ (୬୯୭)

କଳାନିଧିଃ କାବ୍ୟକଳା ରସଜ୍ଞା ରସଶେବଧିଃ ।
ପୁଷ୍ଟା ପୁରାତନା ପୂଜ୍ୟା ପୁଷ୍କରା ପୁଷ୍କରେକ୍ଷଣା ॥ ୧୫୨

ପରଂଜ୍ୟୋତିଃ ପରଂଧାମ ପରମାଣୁଃ ପରାତ୍ପରା ।
ପାଶହସ୍ତା ପାଶହନ୍ତ୍ରୀ ପରମନ୍ତ୍ରବିଭେଦିନୀ ॥ ୧୫୩

ମୂର୍ତ୍ତାମୂର୍ତ୍ତାଽନିତ୍ୟତୃପ୍ତା ମୁନିମାନସହଂସିକା ।
ସତ୍ୟବ୍ରତା ସତ୍ୟରୂପା ସର୍ବାନ୍ତର୍ଯ୍ୟାମିନୀ ସତୀ ॥ ୧୫୪

ବ୍ରହ୍ମାଣୀ ବ୍ରହ୍ମଜନନୀ ବହୁରୂପା ବୁଧାର୍ଚ୍ଚିତା ।
ପ୍ରସବିତ୍ରୀ ପ୍ରଚଣ୍ଡାଜ୍ଞା ପ୍ରତିଷ୍ଠା ପ୍ରକଟାକୃତିଃ ॥ ୧୫୫

ପ୍ରାଣେଶ୍ୱରୀ ପ୍ରାଣଦାତ୍ରୀ ପଞ୍ଚାଶତ୍ପୀଠରୂପିଣୀ ।
ବିଶୃଙ୍ଖଳା ବିବିକ୍ତସ୍ଥା ବୀରମାତା ବିୟତ୍ପ୍ରସୂଃ ॥ ୧୫୬

ମୁକୁନ୍ଦା ମୁକ୍ତିନିଳୟା ମୂଳବିଗ୍ରହରୂପିଣୀ ।
ଭାବଜ୍ଞା ଭବରୋଗଘ୍ନୀ ଭବଚକ୍ରପ୍ରବର୍ତ୍ତିନୀ ॥ ୧୫୭

ଛନ୍ଦଃସାରା ଶାସ୍ତ୍ରସାରା ମନ୍ତ୍ରସାରା ତଳୋଦରୀ ।
ଉଦାରକୀର୍ତ୍ତିରୁଦ୍ଦାମବୈଭବା ବର୍ଣ୍ଣରୂପିଣୀ ॥ ୧୫୮

ଜନ୍ମମୃତ୍ୟୁଜରାତପ୍ତଜନବିଶ୍ରାନ୍ତିଦାୟିନୀ ।
ସର୍ବୋପନିଷଦୁଦ୍ଘୁଷ୍ଟା ଶାନ୍ତ୍ୟତୀତକଳାତ୍ମିକା ॥ ୧୫୯

ଗମ୍ଭୀରା ଗଗନାନ୍ତସ୍ଥା ଗର୍ବିତା ଗାନଲୋଲୁପା ।
କଳ୍ପନାରହିତା କାଷ୍ଠାଽକାନ୍ତା କାନ୍ତାର୍ଦ୍ଧବିଗ୍ରହା ॥୧୬୦(୮୭୧)

କାର୍ଯ୍ୟକାରଣନିର୍ମୁକ୍ତା କାମକେଳିତରଙ୍ଗିତା ।
କନତ୍କନକତାଟଙ୍କା ଲୀଳାବିଗ୍ରହଧାରିଣୀ ॥ ୧୬୧

ଅଜା କ୍ଷୟବିନିର୍ମୁକ୍ତା ମୁଗ୍ଧା କ୍ଷିପ୍ରପ୍ରସାଦିନୀ ।
ଅନ୍ତର୍ମୁଖସମାରାଧ୍ୟା ବହିର୍ମୁଖସୁଦୁର୍ଲଭା ॥ ୧୬୨

ତ୍ରୟୀ ତ୍ରିବର୍ଗନିଳୟା ତ୍ରିସ୍ଥା ତ୍ରିପୁରମାଳିନୀ ।
ନିରାମୟା ନିରାଲମ୍ବା ସ୍ୱାତ୍ମାରାମା ସୁଧାସୃତିଃ ॥ ୧୬୩

ସଂସାରପଙ୍କନିର୍ମଗ୍ନସମୁଦ୍ଧରଣପଣ୍ଡିତା ।
ଯଜ୍ଞପ୍ରିୟା ଯଜ୍ଞକର୍ତ୍ତ୍ରୀ ଯଜମାନସ୍ୱରୂପିଣୀ ॥ ୧୬୪

ଧର୍ମାଧାରା ଧନାଧ୍ୟକ୍ଷା ଧନଧାନ୍ୟବିବର୍ଦ୍ଧିନୀ ।
ବିପ୍ରପ୍ରିୟା ବିପ୍ରରୂପା ବିଶ୍ୱଭ୍ରମଣକାରିଣୀ ॥ ୧୬୫

ବିଶ୍ୱଗ୍ରାସା ବିଦ୍ରୁମାଭା ବୈଷ୍ଣବୀ ବିଷ୍ଣୁରୂପିଣୀ ।
ଅଯୋନିର୍ଯୋନିନିଳୟା କୂଟସ୍ଥା କୁଳରୂପିଣୀ ॥ ୧୬୬

ବୀରଗୋଷ୍ଠୀପ୍ରିୟା ବୀରା ନୈଷ୍କର୍ମ୍ୟା ନାଦରୂପିଣୀ ।
ବିଜ୍ଞାନକଳନା କଲ୍ୟା ବିଦଗ୍ଧା ବୈନ୍ଦବାସନା ॥ ୧୬୭

ତତ୍ତ୍ୱାଧିକା ତତ୍ତ୍ୱମୟୀ ତତ୍ତ୍ୱମର୍ଥସ୍ୱରୂପିଣୀ ।
ସାମଗାନପ୍ରିୟା ସୌମ୍ୟା ସଦାଶିବକୁଟୁମ୍ବିନୀ ॥ ୧୬୮

ସବ୍ୟାପସବ୍ୟମାର୍ଗସ୍ଥା ସବାପଦ୍‌ବିନିବାରିଣୀ ।
ସ୍ୱସ୍ଥା ସ୍ୱଭାବମଧୁରା ଧୀରା ଧୀରସମର୍ଚ୍ଚିତା ॥ ୧୬୯ (୯୧୭)

ଚୈତନ୍ୟାର୍ଘ୍ୟସମାରାଧ୍ୟା ଚୈତନ୍ୟକୁସୁମପ୍ରିୟା ।
ସଦୋଦିତା ସଦାତୁଷ୍ଟା ତରୁଣାଦିତ୍ୟପାଟଳା ॥ ୧୭୦

ଦକ୍ଷିଣାଦକ୍ଷିଣାରାଧ୍ୟା ଦରସ୍ମେରମୁଖାମ୍ବୁଜା ।
କୌଳିନୀ କେବଳାନର୍ଘ୍ୟ କୈବଲ୍ୟପଦଦାୟିନୀ ॥ ୧୭୧

ସ୍ତୋତ୍ରପ୍ରିୟା ସ୍ତୁତିମତୀ ଶ୍ରୁତିସଂସ୍ତୁତବୈଭବା ।
ମନସ୍ୱିନୀ ମାନବତୀ ମହେଶୀ ମଙ୍ଗଳାକୃତିଃ ॥ ୧୭୨

ବିଶ୍ୱମାତା ଜଗଦ୍ଧାତ୍ରୀ ବିଶାଳାକ୍ଷୀ ବିରାଗିଣୀ ।
ପ୍ରଗଲ୍ଭା ପରମୋଦାରା ପରାମୋଦା ମନୋମୟୀ ॥ ୧୭୩

ବ୍ୟୋମକେଶୀ ବିମାନସ୍ଥା ବଜ୍ରିଣୀ ବାମକେଶ୍ୱରୀ ।
ପଞ୍ଚଯଜ୍ଞପ୍ରିୟା ପଞ୍ଚପ୍ରେତମଞ୍ଚାଧିଶାୟିନୀ ॥ ୧୭୪

ପଞ୍ଚମୀ ପଞ୍ଚଭୂତେଶୀ ପଞ୍ଚସଂଖ୍ୟୋପଚାରିଣୀ ।
ଶାଶ୍ୱତଶାଶ୍ୱତୈଶ୍ୱର୍ଯ୍ୟା ଶର୍ମଦା ଶମ୍ଭୁମୋହିନୀ ॥ ୧୭୫

ଧରା ଧରସୁତା ଧନ୍ୟା ଧର୍ମିଣୀ ଧର୍ମବର୍ଦ୍ଧିନୀ ।
ଲୋକାତୀତା ଗୁଣାତୀତା ସର୍ବାତୀତା ଶମାତ୍ମିକା ॥ ୧୭୬

ବନ୍ଧୂକକୁସୁମପ୍ରଖ୍ୟା ବାଳା ଲୀଳାବିନୋଦିନୀ ।
ସୁମଙ୍ଗଳୀ ସୁଖକରୀ ସୁବେଶାଢ଼୍ୟା ସୁବାସିନୀ ॥ ୧୭୭

ସୁବାସିନ୍ୟର୍ଚ୍ଚନପ୍ରୀତାଽଽଶୋଭନା ଶୁଦ୍ଧମାନସା ।
ବିନ୍ଦୁତର୍ପଣସଂତୁଷ୍ଟା ପୂର୍ବଜା ତ୍ରିପୁରାମ୍ବିକା ॥ ୧୭୮ (୪୭୭)

ଦଶମୁଦ୍ରାସମାରାଧ୍ୟା ତ୍ରିପୁରାଶ୍ରୀବଶଙ୍କରୀ ।
ଜ୍ଞାନମୁଦ୍ରା ଜ୍ଞାନଗମ୍ୟା ଜ୍ଞାନଜ୍ଞେୟସ୍ୱରୂପିଣୀ ॥ ୧୭୯

ଯୋନିମୁଦ୍ରା ତ୍ରିଖଣ୍ଡେଶୀ ତ୍ରିଗୁଣାମ୍ବା ତ୍ରିକୋଣଗା ।
ଅନଘାଦ୍ଭୁତଚାରିତ୍ରା ବାଞ୍ଛିତାର୍ଥପ୍ରଦାୟିନୀ ॥ ୧୮୦

ଅଭ୍ୟାସାତିଶୟଜ୍ଞାତା ଷଡ଼ଧ୍ୱାତୀତରୂପିଣୀ ।
ଅବ୍ୟାଜକରୁଣାମୂର୍ତ୍ତିରଜ୍ଞାନଧ୍ୱାନ୍ତଦୀପିକା ॥ ୧୮୧

ଆବାଲଗୋପବିଦିତା ସର୍ବାନୁଲଂଘ୍ୟଶାସନା ।
ଶ୍ରୀଚକ୍ରରାଜନିଲୟା ଶ୍ରୀମତ୍ତ୍ରିପୁରସୁନ୍ଦରୀ ॥ ୧୮୨

ଶ୍ରୀଶିବା ଶିବଶକ୍ତୈ୍ୟକ୍ୟରୂପିଣୀ ଲଳିତାମ୍ବିକା ।
ଏବଂ ଶ୍ରୀଲଳିତାଦେବ୍ୟା ନାମ୍ନାଂ ସାହସ୍ରକଂ ଜଗୁଃ ॥ ୧୮୩
(୧୦୦୦)

ଶ୍ରୀବ୍ରହ୍ମାଣ୍ଡପୁରାଣେ ଉତ୍ତରଖଣ୍ଡେ ଶ୍ରୀହୟଗ୍ରୀବାଗସ୍ତ୍ୟସଂବାଦେ
ଶ୍ରୀଲଳିତାସହସ୍ରନାମସ୍ତୋତ୍ରକଥନଂ ନାମ ଦ୍ୱିତୀୟୋଽଧ୍ୟାୟଃ

ଗୁହ୍ୟାତିଗୁହ୍ୟଗୋପ୍ତ୍ରୀ ତ୍ୱଂ ଗୃହାଣାସ୍ମତ୍କୃତାର୍ଚ୍ଚନମ୍ ।
ସିଦ୍ଧିର୍ଭବତୁ ମେ ଦେବି ତ୍ୱତ୍ପ୍ରସାଦାନ୍ମହେଶ୍ୱରି ॥

ଓଁ

ଶ୍ରୀଚକ୍ରେଶ୍ୱର ଜମ୍ବୁଚକ୍ରେଶ୍ୱର ରାଜଚକ୍ରେଶ୍ୱର ପାହି ମାମ୍ ।
ତ୍ରିପୁରସୁନ୍ଦର ତ୍ରିପୁରସୁନ୍ଦର ତ୍ରିପୁରସୁନ୍ଦର ରକ୍ଷ ମାମ୍ ॥



# ଫଳଶ୍ରୁତିଃ

* ଇତ୍ୟେବଂ ନାମସାହସ୍ରଂ କଥିତଂ ତେ ଘଟୋଦ୍ଭବ ।
ରହସ୍ୟାନାଂ ରହସ୍ୟଂ ଚ ଲଳିତାପ୍ରୀତିଦାୟକମ୍ ।
ଅନେନସଦୃଶଂ ସ୍ତୋତ୍ରଂ ନ ଭୂତଂ ନ ଭବିଷ୍ୟତି । ୧ ।
ସର୍ବରୋଗପ୍ରଶମନଂ ସର୍ବସଂପତ୍ପ୍ରବର୍ଦ୍ଧନମ୍ ।
ସର୍ବାପମୃତ୍ୟୁଶମନଂ କାଲମୃତ୍ୟୁନିବାରଣମ୍ । ୨ ।
ସର୍ବଜ୍ୱରାର୍ତ୍ତିଶମନଂ ଦୀର୍ଘାୟୁଷ୍ୟପ୍ରଦାୟକମ୍ ।
ପୁତ୍ରପ୍ରଦମପୁତ୍ରାଣାଂ ପୁରୁଷାର୍ଥପ୍ରଦାୟକମ୍ । ୩ ।
ଇଦଂ ବିଶେଷାଚ୍ଛ୍ରୀଦେବ୍ୟାଃ ସ୍ତୋତ୍ରଂ ପ୍ରୀତିବିଧାୟକମ୍ । *
ଜପେନ୍ନିତ୍ୟଂ ପ୍ରଯତ୍ନେନ ଲଳିତୋପାସ୍ତିତତ୍ପରଃ । ୪ ।

---

## ଫଳଶ୍ରୁତି

(ହୟଗ୍ରୀବ କହିଲେ) ହେ କୁମ୍ଭଜ ଅଗସ୍ତ୍ୟ ! ଏହି ପରି ଲଳିତା ପ୍ରୀତିଦାୟକ ରହସ୍ୟାତିରହସ୍ୟ ଅତି ଗୋପନୀୟ ଲଳିତା ସହସ୍ରନାମ ତୁମକୁ ମୁଁ କହିଲି । ଏହିପରି ସ୍ତୋତ୍ର (ଅତୀତରେ) ନ ଥିଲା କି (ଭବିଷ୍ୟତରେ) ହେବ ନାହିଁ । ୧ ।

ଏହା ପାଠକଲେ ସକଳ ରୋଗ ପ୍ରଶମିତ ହୁଏ, ସମସ୍ତପ୍ରକାର ସମ୍ପଦର ଅଭିବୃଦ୍ଧି ଘଟେ । ସର୍ବଥା ଅପମୃତ୍ୟୁ ବା ଦୁର୍ଘଟଣାରୁ ରକ୍ଷାମିଳେ, କାଳମୃତ୍ୟୁର ନିବାରଣ ହୁଏ । ସମସ୍ତପ୍ରକାର ଜ୍ୱରପୀଡ଼ା ନିବୃତ୍ତ ହୁଏ । ଦୀର୍ଘ ଆୟୁଷ ହୁଏ । ୨ ।

ଅପୁତ୍ରକମାନେ ପୁତ୍ରଲାଭ କରନ୍ତି ଏବଂ ଧର୍ମ-ଅର୍ଥ-କାମ-ମୋକ୍ଷ—ଏହି ପୁରୁଷାର୍ଥ ଚତୁଷ୍ଟୟ ମିଳେ । ୩ ।

ଶ୍ରୀ (ଷୋଡ଼ଶୀ ଲଳିତା) ଦେବୀଙ୍କର ବିଶେଷ ଭାବରେ ପ୍ରୀତି ବିଧାୟକ ଏହି ସ୍ତୋତ୍ରକୁ ଲଳିତା-ଉପାସକ ଯତ୍ନର ସହିତ ନିତ୍ୟ ଜପ ବା ବାରମ୍ବାର ପାଠ କରିବା ଉଚିତ । ୪ ।

ପ୍ରାତଃ ସ୍ନାତ୍ୱା ବିଧାନେନ ସନ୍ଧ୍ୟାକର୍ମ ସମାପ୍ୟ ଚ ।
ପୂଜାଗୃହଂ ତତୋ ଗତ୍ୱା ଚକ୍ରରାଜଂ ସମର୍ଚ୍ଚୟେତ୍ । ୫ ।

ବିଦ୍ୟାଂ ଜପେତ୍ସହସ୍ରଂ ବା ତ୍ରିଶତଂ ଶତମେବ ବା ।
ରହସ୍ୟନାମସାହସ୍ରମିଦଂ ପଶ୍ଚାତ୍ ପଠେନ୍ନରଃ । ୬ ।

ଜନ୍ମମଧ୍ୟେ ସକୃଚ୍ଚାପି ଯ ଏତତ୍ପଠତେ ସୁଧୀଃ ।
ତସ୍ୟ ପୁଣ୍ୟଫଳଂ ବକ୍ଷ୍ୟେ ଶୃଣୁ ତ୍ୱଂ କୁମ୍ଭସମ୍ଭବ । ୭ ।

ଗଙ୍ଗାଦି ସର୍ବତୀର୍ଥେଷୁ ଯଃ ସ୍ନାୟାତ୍ କୋଟିଜନ୍ମସୁ ।
କୋଟିଲିଙ୍ଗ-ପ୍ରତିଷ୍ଠାଂ ଚ ଯଃ କୁର୍ଯ୍ୟାଦବିମୁକ୍ତକେ । ୮ ।

କୁରୁକ୍ଷେତ୍ରେ ତୁ ଯୋ ଦଦ୍ୟାତ୍ କୋଟିବାରଂ ରବିଗ୍ରହେ ।
କୋଟିଂ ସୁବର୍ଣ୍ଣଭାରାଣାଂ ଶ୍ରୋତ୍ରିୟେଷୁ ଦ୍ୱିଜନ୍ମସୁ । ୯ ।

ଯଃ କୋଟିଂ ହୟମେଧାନାମାହରେଦ୍‌ଗାଙ୍ଗରୋଧସି ।
ଆଚରେତ୍‌କୂପକୋଟୀର୍ଯୋ ନିର୍ଜଳେ ମରୁଭୂତଳେ । ୧୦ ।

---

ଲଳିତା-ଉପାସକ ସକାଳେ ଗାଧୋଇ ବିଧିପୂର୍ବକ ସନ୍ଧ୍ୟାକର୍ମ ସାରି, ତା'ପରେ ପୂଜାଗୃହକୁ ଯାଇ ଶ୍ରୀଚକ୍ରରାଜଙ୍କର ଅର୍ଚ୍ଚନାକରିବେ । ତାପରେ ଶ୍ରୀବିଦ୍ୟା ଜପ ଏକ ହଜାର ବା ତିନିଶହ ବା ଏକଶହ କରିବା ଉଚିତ । ତା'ପରେ ଏହି ରହସ୍ୟ ସହସ୍ରନାମ ଶେଷରେ ପାଠକରିବା ଉଚିତ । ୫-୬ ।

ହେ ଅଗସ୍ତ୍ୟ ! ଉତ୍ତମ ବୁଦ୍ଧିସମ୍ପନ୍ନଲୋକ ନିଜ ଜୀବନରେ ଥରେ ଏହାକୁ ପଢ଼ିଲେ ତା'ର ଯେଉଁ ପୁଣ୍ୟ ହୁଏ, ତା'ର ଫଳ ମୁଁ ତୁମକୁ କହୁଛି । ୭ ।—

ଗଙ୍ଗାଦି ସକଳତୀର୍ଥରେ କୋଟିଏ ଜନ୍ମ ସ୍ନାନକଲେ ଯେଉଁ ଫଳ, ଅବିମୁକ୍ତ କାଶୀ କ୍ଷେତ୍ରରେ କୋଟିଏ ଲିଙ୍ଗ ପ୍ରତିଷ୍ଠାକଲେ ଯେଉଁ ଫଳ, ସୂର୍ଯ୍ୟ-ପରାଗସମୟରେ କୁରୁକ୍ଷେତ୍ରରେ ବେଦଜ୍ଞ ବ୍ରାହ୍ମଣଙ୍କୁ କୋଟିଏ ସୁବର୍ଣ୍ଣଭାର କୋଟିଏଥର ଦାନକଲେ ଯେଉଁଫଳ, ଗଙ୍ଗାକୂଳରେ କୋଟିଏ ଅଶ୍ୱମେଧଯଜ୍ଞ କଲେ ଯେଉଁଫଳ, ନିର୍ଜଳ ମରୁଭୂମିରେ କୋଟିଏ କୂଅ ଖୋଳିଲେ ଯେଉଁ ଫଳ,

ଦୁର୍ଭିକ୍ଷେ ଯଃ ପ୍ରଦଦ୍ୟାନଂ କୋଟିବ୍ରାହ୍ମଣଭୋଜନମ୍ ।
ଶ୍ରଦ୍ଧୟା ପରୟା କୁର୍ଯ୍ୟାତ୍ ସହସ୍ରପରିବତ୍ସରାନ୍ । ୧୧ ।
ତତ୍ପୁଣ୍ୟକୋଟିଗୁଣିତଂ ଲଭେତ୍ପୁଣ୍ୟମନୁତ୍ତମମ୍ ।
ରହସ୍ୟନାମସାହସ୍ରେ ନାମ୍ନୋପ୍ୟେକସ୍ୟ କୀର୍ତ୍ତନାତ୍ । ୧୨ ।
ରହସ୍ୟନାମସାହସ୍ରେ ନାମୈକମପି ଯଃ ପଠେତ୍ ।
ତସ୍ୟ ପାପାନି ନଶ୍ୟନ୍ତି ମହାନ୍ତ୍ୟପି ନ ସଂଶୟଃ । ୧୩ ।
ନିତ୍ୟକର୍ମାନନୁଷ୍ଠାନାତ୍ ନିଷିଦ୍ଧକରଣାଦପି ।
ଯତ୍ପାପଂ ଜାୟତେ ପୁଂସାଂ ତତ୍ସର୍ବଂ ନଶ୍ୟତି ଧ୍ରୁବମ୍ । ୧୪ ।
ବହୁନାତ୍ର କିମୁକ୍ତେନ ଶୃଣୁ ତ୍ୱଂ କଲଶୀସୁତ । ୧୫ ।
ଅତ୍ରୈକନାମ୍ନୋ ଯା ଶକ୍ତିଃ ପାତକାନାଂ ନିବର୍ତ୍ତନେ ।
ତନ୍ନିବର୍ତ୍ତ୍ୟମଘଂ କର୍ତ୍ତୁଂ ନାଲଂ ଲୋକାଶ୍ଚତୁର୍ଦ୍ଦଶ । ୧୬ ।

---

ଏହିପରି ବର୍ଷକାଳ ଶ୍ରଦ୍ଧାର ସହିତ ଦୁର୍ଭିକ୍ଷ ସମୟରେ ପ୍ରତିଦିନ କୋଟିଏ ବ୍ରାହ୍ମଣ ଭୋଜନକଲେ ଯେଉଁ ଫଳ, ସେହି ପୁଣ୍ୟ କୋଟିଗୁଣ ହୋଇଯାଏ । ସେ ଅତି ଉତ୍ତମ ପୁଣ୍ୟଲାଭ କରେ, ଯେ ଏହି ରହସ୍ୟ ସହସ୍ରନାମ ମଧ୍ୟରୁ ଗୋଟିଏ ହେଲେ ନାମ କୀର୍ତ୍ତନ କରେ । ୮-୧୨ ।

ଯେ ଏହି ରହସ୍ୟନାମ ସହସ୍ରରୁ ଗୋଟିଏ ହେଲେ ନାମ ପାଠକରେ ତା'ର ପାପ ଯେତେ ବଡ ହେଲେ ବି ନଷ୍ଟ ହୋଇଯାଏ । ୧୩ ।

ନିତ୍ୟକର୍ମ ନ କଲେ ବା ନିଷିଦ୍ଧ କଥା କରି ବସିଲେ ଯେଉଁ ପାପ ଲୋକଙ୍କର ହୁଏ, ସେ ସବୁ ଏହି ସହସ୍ରନାମ ପାଠକଲେ ନିଶ୍ଚୟ ନଷ୍ଟ ହୋଇଯାଏ । ୧୪ ।

(ହୟଗ୍ରୀବ କହୁଛନ୍ତି—) ହେ ଅଗସ୍ତ୍ୟ ଶୁଣ, ବହୁତ କହି କିଛି ଲାଭ ନାହିଁ । ୧୫ ।

ଏଥିର ଗୋଟିଏ ନାମର ଯେଉଁ ପାପ ନାଶ କରିବା ଶକ୍ତି, ତା'ଠାରୁ ଅଧିକ ପାପ ଚଉଦ ଭୁବନର ଲୋକେ ମିଶି ମଧ୍ୟ କରି ପାରିବେ ନାହିଁ । ୧୬ ।

ଯତ୍ନ୍ୟକ୍ତ୍ୱା ନାମସାହସ୍ରଂ ପାପହାନିମଭୀପ୍‌ସତି ।
ସ ହି ଶୀତନିବୃତ୍ତ୍ୟର୍ଥଂ ହିମଶୈଳଂ ନିଷେବତେ । ୧୭ ।
ଭକ୍ତ୍ୟା ଯଃ କୀର୍ତ୍ତୟେନ୍ନିତ୍ୟମିଦଂ ନାମସହସ୍ରକମ୍ ।
ତସ୍ମୈ ଶ୍ରୀଲଲିତାଦେବୀ ପ୍ରୀତାଭୀଷ୍ଟଂ ପ୍ରଯଚ୍ଛତି । ୧୮ ।
ଅକୀର୍ତ୍ତୟନ୍ନିଦଂ ସ୍ତୋତ୍ରଂ କଥଂ ଭକ୍ତୋ ଭବିଷ୍ୟତି ।
ନିତ୍ୟଂ ସଂକୀର୍ତ୍ତନାଶକ୍ତଃ କୀର୍ତ୍ତୟେତ୍ ପୁଣ୍ୟବାସରେ । ୧୯ ।
ସଂକ୍ରାନ୍ତୌ ବିଷୁବେ ଚୈବ ସ୍ୱଜନ୍ମତ୍ରିତୟେଽୟନେ ।
ନବମ୍ୟାଂ ବା ଚତୁର୍ଦ୍ଦଶ୍ୟାଂ ସିତାୟାଂ ଶୁକ୍ରବାସରେ ।
କୀର୍ତ୍ତୟେନ୍ନାମସାହସ୍ରଂ ପୌର୍ଣ୍ଣମାସ୍ୟାଂ ବିଶେଷତଃ । ୨୦ ।
ପୌର୍ଣ୍ଣମାସ୍ୟାଂ ଚନ୍ଦ୍ରବିମ୍ବେ ଧ୍ୟାତ୍ୱା ଶ୍ରୀଲଲିତାମ୍ବିକାମ୍ ।
ପଞ୍ଚୋପଚାରୈଃ ସଂପୂଜ୍ୟ ପଠେନ୍ନାମସହସ୍ରକମ୍ । ୨୧ ।

---

ଶୀତନିବାରଣ ପାଇଁ ହିମାଳୟକୁ ଆଶ୍ରୀକରିବା ଯେପରି ବୃଥା, ସେପରି ସହସ୍ର ନାମକୁ ଛାଡ଼ି (ଅର୍ଥାତ୍ ପାଠ ନକରି) ପାପ ନାଶ କରିବାକୁ ଇଚ୍ଛା କରିବା ସେପରି ବୃଥା । ୧୭ ।

ଯେଉଁ ଭକ୍ତ ଏହି ସହସ୍ର ନାମ ନିତ୍ୟ କୀର୍ତ୍ତନ କରେ ଶ୍ରୀଲଳିତା ଦେବୀ ପ୍ରୀତ ହୋଇ ତାହାକୁ ଅଭୀଷ୍ଟଫଳ ପ୍ରଦାନ କରିଥା'ନ୍ତି । ୧୮ ।

ଏହି ସ୍ତୋତ୍ରକୁ କୀର୍ତ୍ତନ ବା ବାରମ୍ବାର ପାଠ ନ କରି ଭକ୍ତ କିପରି ହୋଇପାରିବ ? ନିତ୍ୟ ସଂକୀର୍ତ୍ତନ କରିପାରୁ ନ ଥିବା ବ୍ୟକ୍ତି ପୁଣ୍ୟ ଦିନମାନଙ୍କରେ ଏହାକୁ ବାରମ୍ବାର ପାଠ କରିବା ଉଚିତ । ୧୯ ।

ସଂକ୍ରାନ୍ତି ଦିନ, ବିଷୁବସଂକ୍ରାନ୍ତିରେ (ବିଶେଷତଃ), ନିଜର ଜନ୍ମବାର, ଜନ୍ମ ତିଥି ଓ ଜନ୍ମ ନକ୍ଷତ୍ର— ଏହି ଜନ୍ମ ତ୍ରିତୟଦିନମାନଙ୍କରେ, ଶୁକ୍ଳ ପକ୍ଷର ନବମୀ ଓ ଚତୁର୍ଦ୍ଦଶୀରେ, ତଥା ଶୁକ୍ରବାରରେ ଏବଂ ପୂର୍ଣ୍ଣିମାଦିନ ବିଶେଷଭାବରେ ଏହି ସହସ୍ର ନାମ କୀର୍ତ୍ତନ (ବା ବାରମ୍ବାରପାଠ) କରିବା ଉଚିତ । ୨୦ ।

ପୂର୍ଣ୍ଣିମାଦିନ ରାତିରେ ଚନ୍ଦ୍ରମଣ୍ଡଳରେ ମା' ଶ୍ରୀଲଳିତାଙ୍କୁ ଧ୍ୟାନ କରି ପଞ୍ଚୋପଚାରରେ ପୂଜାକରି ସହସ୍ରନାମ ପଢ଼ିବା ଉଚିତ । ଏହା କଲେ

ସର୍ବେ ରୋଗାଃ ପ୍ରଣଶ୍ୟନ୍ତି ଦୀର୍ଘ ମୁଷ୍ୟଂ ଚ ବିନ୍ଦତି ।
ଅୟମାୟୁଷ୍କରୋ ନାମ ପ୍ରୟୋଗଃ କଲ୍ପଚୋଦିତଃ । ୧୨ ।

ଜ୍ୱରାର୍ତ୍ତଂ ଶିରସି ସ୍ପୃଷ୍ଟ୍ୱା ପଠେନ୍ନାମସହସ୍ରକମ୍ ।
ତତ୍କ୍ଷଣାତ୍ ପ୍ରଶମଂ ଯାତି ଶିରସ୍ତୋଦୋ ଜ୍ୱରୋଽପି ଚ । ୧୩ ।

ସର୍ବବ୍ୟାଧିନିବୃତ୍ତ୍ୟର୍ଥଂ ସ୍ପୃଷ୍ଟ୍ୱା ଭସ୍ମ ଜପେଦିଦମ୍ ।
ତଦ୍ଭସ୍ମ ଧାରଣାଦେବ ନଶ୍ୟନ୍ତି ବ୍ୟାଧୟଃ କ୍ଷଣାତ୍ । ୧୪ ।

ଜଲଂ ସଂମନ୍ତ୍ର୍ୟ କୁମ୍ଭସ୍ଥଂ ନାମସାହସ୍ରତୋ ମୁନେ ।
ଅଭିଷିଞ୍ଚେଦ୍ ଗ୍ରହଗ୍ରସ୍ତାନ୍ ଗ୍ରହା ନଶ୍ୟନ୍ତି ତତ୍କ୍ଷଣାତ୍ । ୧୫ ।

ସୁଧାସାଗରମଧ୍ୟସ୍ଥାଂ ଧ୍ୟାତ୍ୱା ଶ୍ରୀଲଲିତାମ୍ବିକାମ୍ ।
ଯଃ ପଠେନ୍ନାମସାହସ୍ରଂ ବିଷଂ ତସ୍ୟ ବିନଶ୍ୟତି । ୧୬ ।

ବନ୍ଧ୍ୟାନାଂ ପୁତ୍ରଲାଭାୟ ନାମସାହସ୍ରମନ୍ତ୍ରିତମ୍ ।
ନବନୀତଂ ପ୍ରଦଦ୍ୟାତ୍ତୁ ପୁତ୍ରଲାଭୋ ଭବେଦ୍ ଧ୍ରୁବମ୍ । ୧୭ ।

---

ସକଲରୋଗ ନାଶ ହୁଏ ଏବଂ ଦୀର୍ଘାୟୁଷ ଲାଭହୁଏ । କଳ୍ପାନୁସାରେ ଏହାର ନାମ 'ଆୟୁଷ୍କର ପ୍ରୟୋଗ' । ୧୧-୧୨ ।

ଜ୍ୱରାର୍ତ୍ତିବ୍ୟକ୍ତିର ମସ୍ତକ ସ୍ପର୍ଶକରି ଏହି ସହସ୍ରନାମ ପାଠ କଲେ ସଙ୍ଗେ ସଙ୍ଗେ ମୁଣ୍ଡବ୍ୟଥା ଓ ଜ୍ୱର ଉପଶମ ହୋଇଯାଏ । ୧୩ ।

ସକଳ ବ୍ୟାଧିର ନିବାରଣ ପାଇଁ ବିଭୂତି (ଭସ୍ମ)କୁ ଛୁଇଁ ଏହା ଜପ କରିବା ଉଚିତ । ସେ ଭସ୍ମ ଧାରଣ କଲେ ଅଳ୍ପ ସମୟ ଭିତରେ ବ୍ୟାଧିନାଶ ହୋଇଥାଏ । ୧୪ ।

ହେ ମୁନି (ଅଗସ୍ତ୍ୟ) ! ସହସ୍ରନାମ ଦ୍ୱାରା କୁମ୍ଭସ୍ଥ ଜଳକୁ ଅଭିମନ୍ତ୍ରିତ କରି ଗ୍ରହଗ୍ରସ୍ତ ବ୍ୟକ୍ତି ଉପରେ ଛିଞ୍ଚିଲେ ଗ୍ରହପୀଡ଼ା ଦୂର ହୁଏ । ୧୫ ।

ସୁଧାସାଗର ମଧ୍ୟସ୍ଥ ଶ୍ରୀପୁର ନିବାସିନୀ ମା' ଲଳିତାଙ୍କୁ ଧ୍ୟାନ କରି ଯେ ସହସ୍ରନାମ ପାଠକରେ ତା'ର ବିଷଦୋଷ ନଷ୍ଟ ହୋଇଯାଏ । ୧୬ ।

ବନ୍ଧ୍ୟାମାନଙ୍କର ପୁତ୍ର ଲାଭ ସକାଶେ ସହସ୍ରନାମ ଦ୍ୱାରା ଅଭିମନ୍ତ୍ରିତ ନବନୀତ ପ୍ରଦାନ କଲେ ନିଶ୍ଚୟ ପୁତ୍ରଲାଭ ହେବ । ୧୭ ।

ଦେବ୍ୟାଃ ପାଶେନ ସଂବଦ୍ଧାମ୍ ଆକୃଷ୍ଟାମଙ୍କୁଶେନ ଚ ।
ଧ୍ୟାତ୍ୱାଭୀଷ୍ଟାଂ ସ୍ତ୍ରିୟଂ ରାତ୍ରୌ ଜପେନ୍ନାମସହସ୍ରକମ୍ ।
ଆୟାତି ସ୍ୱସମୀପଂ ସା ଯଦ୍ୟପ୍ୟନ୍ତଃପୁରଂ ଗତା । ୨୮ ।
ରାଜାକର୍ଷଣକାମଶ୍ଚେଦ୍ରାଜାବସଥଦିଙ୍ମୁଖଃ ।
ତ୍ରିରାତ୍ରଂ ଯଃ ପଠେଦେତଚ୍ଛ୍ରୀଦେବୀଧ୍ୟାନତତ୍ପରଃ । ୨୯ ।
ସ ରାଜା ପାରବଶ୍ୟେନ ତୁରଙ୍ଗଂ ବା ମତଙ୍ଗଜମ୍ ।
ଆରୁହ୍ୟାୟାତି ନିକଟଂ ଦାସବତ୍ ପ୍ରଣିପତ୍ୟ ଚ ।
ତସ୍ମୈ ରାଜ୍ୟଂ ଚ କୋଶଂ ଚ ଦଦାତ୍ୟେବ ବଶଂ ଗତଃ । ୩୦ ।
ରହସ୍ୟନାମସାହସ୍ରଂ ଯଃ କୀର୍ତ୍ତୟତି ନିତ୍ୟଶଃ ।
ତନ୍ମୁଖାଲୋକମାତ୍ରେଣ ମୁହ୍ୟେଲ୍ଲୋକତ୍ରୟଂ ମୁନେ । ୩୧ ।
ଯସ୍ତ୍ୱିଦଂ ନାମସାହସ୍ରଂ ସକୃତ୍ ପଠତି ଭକ୍ତିମାନ୍ ।
ତସ୍ୟ ଯେ ଶତ୍ରବସ୍ତେଷାଂ ନିହନ୍ତା ଶରଭେଶ୍ୱରଃ । ୩୨ ।

---

ଦେବୀଙ୍କ ପାଶରେ ବନ୍ଧା ଓ ଅଙ୍କୁଶରେ ଆକୃଷ୍ଟାପର ଅଭିଳଷିତ ସ୍ତ୍ରୀକୁ ଧ୍ୟାନ କରି ରାତିରେ ସହସ୍ରନାମ ଜପ କଲେ ସେ ସ୍ତ୍ରୀ ଅନ୍ତଃପୁରକୁ ଯାଇଥିଲେ ମଧ୍ୟ (ଜପୁଥିବା ଲୋକର) ନିଜ ପାଖକୁ ଚାଲିଆସେ । ୨୮ ।

ରାଜାଙ୍କ ଆକର୍ଷଣ କରିବା ପାଇଁ ଇଚ୍ଛୁକ ବ୍ୟକ୍ତି ରାଜା ବାସ କରୁଥିବା ଦିଗକୁ ମୁଖକରି ଶ୍ରୀଦେବୀଙ୍କ ଧ୍ୟାନରେ ତତ୍ପର ହୋଇ ତିନରାତି ଏହି ସହସ୍ର-ନାମ ପାଠକଲେ ଉକ୍ତ ରାଜା ବଶୀଭୂତ ହୋଇ ଘୋଡା ବା ହାତୀରେ ଚଢ଼ି ଆସି ଦାସ ବା ଭୃତ୍ୟ ପରି ପ୍ରଣାମ କରି ରାଜ୍ୟ ଓ ସମ୍ପଦ ସବୁ ତାହାଙ୍କୁ ଦେଇଦିଏ । ୨୯-୩୦ ।

ହେ ମୁନି ଅଗସ୍ତ୍ୟ ! ଯେଉଁ ଲୋକ ଏହି ରହସ୍ୟ ସହସ୍ରନାମ ପ୍ରତିଦିନ କୀର୍ତ୍ତନ କରେ ତା'ର ମୁଖ ଦେଖିଲେ ତିନି ଲୋକ ଅର୍ଥାତ୍ ସ୍ୱର୍ଗ ମର୍ତ୍ତ୍ୟ ପାତାଳର ଲୋକେ ମୋହିତ ହୋଇ ଯାଆନ୍ତି । ୩୧ ।

ଯେଉଁ ଭକ୍ତିମାନ୍ ଲୋକ ଏହାକୁ ଥରେ ପଢ଼େ । ତାହାର ଶତ୍ରୁ-ମାନଙ୍କୁ ଶରଭେଶ୍ୱର ନାଶ କରନ୍ତି । ୩୨ ।

ଟଯୋ ବାଭଗୃରଂ କୁରୁତେ ନାମସାହସ୍ରପାଠକେ ।
ଚ୍ଛବର୍ତ୍ତୀ ତତ୍କ୍ଷିସ୍ମାଂ ହନ୍ୟାତ୍ ତଂ ବୈ ପ୍ରତ୍ୟଙ୍ଗିରା ସ୍ୱୟମ୍ । ୩୩ ।
ଯେ କ୍ରୂର ଦୃଷ୍ଟ୍ୟା ବୀକ୍ଷନ୍ତେ ନାମସାହସ୍ର ପାଠକମ୍ ।
ତାନନ୍ଧାନ୍ କୁରୁତେ କ୍ଷିପ୍ରଂ ସ୍ୱୟଂ ମାର୍ତ୍ତାଣ୍ଡଭୈରବଃ । ୩୪ ।
ଧନଂ ଯୋ ହରତେ ଚୌରୈର୍ନାମସାହସ୍ରଜାପିନଃ ।
ଯତ୍ର କୁତ୍ର ସ୍ଥିତଂ ବାପି କ୍ଷେତ୍ରପାଳା ନିହନ୍ତି ତମ୍ । ୩୫ ।
ବିଦ୍ୟାସୁ କୁରୁତେ ବାଦଂ ଯୋ ବିଦ୍ୱାନ୍ନାମଜାପିନା ।
ତସ୍ୟ ବାକ୍ ସ୍ତମ୍ଭନଂ ସଦ୍ୟଃ କରୋତି ନକୁଲୀଶ୍ୱରୀ । ୩୬ ।
ଯୋ ରାଜା କୁରୁତେ ବୈରଂ ନାମସାହସ୍ର ଜାପିନା ।
ଚତୁରଙ୍ଗବଳଂ ତସ୍ୟ ଦଣ୍ଡିନୀ ସଂହରେତ୍ସ୍ୱୟମ୍ । ୩୭ ।
ଯଃ ପଠେନ୍ନାମସାହସ୍ରଂ ଷଣ୍ମାସଂ ଭକ୍ତିସଂଯୁତଃ ।
ଲକ୍ଷ୍ମୀଶ୍ଚାଞ୍ଚଲ୍ୟରହିତା ସଦା ତିଷ୍ଠତି ତଦ୍‌ଗୃହେ । ୩୮ ।

---

ସହସ୍ରନାମ ପାଠକ ଉପରେ ଯିଏ ଅଭିଗ୍ରହ (ଅର୍ଥାତ୍ ଗୁଣିଗାରେଡି-ଦ୍ୱାରା ମାରଣାଦି) ପ୍ରୟୋଗ କରେ, ଉକ୍ତ କ୍ରିୟାକୁ କରିଥିବା ଲୋକ ଉପରେ ପ୍ରୟୋଗ ଓଲଟାଇ ତାକୁ ପ୍ରତ୍ୟଙ୍ଗିରା ଦେବୀ ନାଶ କରନ୍ତି । ୩୩ ।

ସହସ୍ରନାମ ପାଠକକୁ ଯେଉଁମାନେ କ୍ରୂରଦୃଷ୍ଟିରେ ଦେଖନ୍ତି ସେମାନଙ୍କୁ ନିଜେ ମାର୍ତ୍ତାଣ୍ଡଭୈରବ ଶୀଘ୍ର ଅନ୍ଧ କରିଦିଅନ୍ତି । ୩୪ ।

ସହସ୍ରନାମ ଜପ କରୁଥିବା ଲୋକର ଧନକୁ ଚୋରଦ୍ୱାରା ଯିଏ ହରଣ କରେ । ସେ ଯେଉଁଠାରେ ଥାଉ ପଛକେ ତାକୁ କ୍ଷେତ୍ରପାଳ ନିଧନ କରନ୍ତି ।।୩୫।।

ସହସ୍ରନାମ ଜପ କରୁଥିବା ଲୋକ ସହ କୌଣସି ବିଦ୍ୱାନ୍ ବିଦ୍ୟାବାଦ କଲେ, ନକୁଲେଶ୍ୱରୀ ସଦ୍ୟ ତା'ର ବାକ୍‌ସ୍ତମ୍ଭନ କରିଦିଅନ୍ତି । ୩୬ ।

ସହସ୍ରନାମ ଜପକରୁଥିବା ଲୋକସହ ଯେଉଁରାଜା ବୈରତା ଆଚରଣ କରେ ତା'ର ଚତୁରଙ୍ଗବଳ (ବା ପଦାତିକ, ଅଶ୍ୱାରୋହୀ, ଗଜାରୋହୀ, ରଥାରୋହୀସେନା)ଙ୍କୁ ଦଣ୍ଡିନୀ ଦେବୀ ନିଜେ ନାଶ କରନ୍ତି । ୩୭ ।

ଯିଏ ଏହି ସହସ୍ରନାମ ଭକ୍ତିର ସହିତ ଛ'ମାସ ପଢ଼ିବ, ଚଞ୍ଚଳା ଲକ୍ଷ୍ମୀ ଚଞ୍ଚଳତା ତ୍ୟାଗ କରି ତା'ର ଘରେ ସର୍ବଦା ରହନ୍ତି । ୩୮ ।

ମା ସମେକଂ ପ୍ରତିଦିନଂ ତ୍ରିବାରଂ ଯଃ ପଠେନ୍ନରଃ ।
ଭାରତୀ ତସ୍ୟ ଜିହ୍ୱାଗ୍ରେ ରଙ୍ଗେ ନୃତ୍ୟତି ନିତ୍ୟଶଃ । ୩୯ ।
ଯସ୍ତ୍ୱେକବାରଂ ପଠତି ପକ୍ଷମାତ୍ରମତନ୍ଦ୍ରିତଃ ।
ମୁହ୍ୟନ୍ତି କାମବଶଗା ମୃଗାକ୍ଷ୍ୟସ୍ତସ୍ୟ ବୀକ୍ଷଣାତ୍ । ୪୦ ।
ଯଃ ପଠେନ୍ନାମସାହସ୍ରଂ ଜନ୍ମମଧ୍ୟେ ସକୃନ୍ନରଃ ।
ତଦ୍‌ଦୃଷ୍ଟିଗୋଚରାଃ ସର୍ବେ ମୁଚ୍ୟନ୍ତେ ସର୍ବକିଲ୍‌ବିଷୈଃ । ୪୧ ।
ଯୋ ବେତ୍ତି ନାମସାହସ୍ରଂ ତସ୍ମୈ ଦେୟଂ ଦ୍ୱିଜନ୍ମନେ ।
ଅନ୍ନଂ ବସ୍ତ୍ରଂ ଧନଂ ଧାନ୍ୟଂ ନାନ୍ୟେଭ୍ୟସ୍ତୁ କଦାଚନ । ୪୬ ।
ଶ୍ରୀମନ୍ତ୍ରରାଜଂ ଯୋ ବେତ୍ତି ଶ୍ରୀଚକ୍ରଂ ଯଃ ସମର୍ଚ୍ଚତି ।
ଯଃ କୀର୍ତ୍ତୟତି ନାମାନି ତଂ ସତ୍ପାତ୍ରଂ ବିଦୁର୍ବୁଧାଃ । ୪୩ ।
ତସ୍ମୈ ଦେୟଂ ପ୍ରୟତ୍ନେନ ଶ୍ରୀଦେବୀପ୍ରୀତିମିଚ୍ଛତା । ୪୪ ।

---

ଯେଉଁଲୋକ ଦିନକୁ ତିନ ଥର କରି ଏକମାସ କାଳ ଏହି ସହସ୍ରନାମ ପଢ଼ିବ, ତା'ର ଜିହ୍ୱାରେ ସରସ୍ୱତୀ ନିତ୍ୟ ସୁନ୍ଦର ନର୍ତ୍ତନ କରନ୍ତି । ୩୯ ।

ଯେଉଁଲୋକ ଅତନ୍ଦ୍ର ବା ଅନଳସ ଭାବରେ (ବିଶେଷତଃ ରାତିରେ) ଏକପକ୍ଷ ବା ପନ୍ଦର ଦିନ ଥରେ ଲେଖା ପଢ଼ିବ, ତା'ର ଦୃଷ୍ଟି ପଡ଼ିଲେ ହରିଣ ନୟନା କାମିନୀଗଣ ବଶ ହୋଇ ମୋହିତ ହେବେ । ୪୦ ।

ଜୀବନରେ ଥରେ ଯିଏ ଏହି ସହସ୍ରନାମ ପଢ଼ିବ, ତା'ର ଦୃଷ୍ଟି-ଗୋଚର ସକଳ ଲୋକ ସମସ୍ତ ପାପରୁ ମୁକ୍ତ ହେବେ । ୪୧ ।

ଯେ ସହସ୍ର ନାମ ଜାଣେ, ସେହି ଦ୍ୱିଜନ୍ମା (ଶାକ୍ତ)ଙ୍କୁ ଅନ୍ନ, ବସ୍ତ୍ର, ଧନ, ଧାନ୍ୟ ଦାନ କରିବା ଉଚିତ । ତାଙ୍କ ବ୍ୟତୀତ ଅନ୍ୟ କାହାକୁ କେବେ-ହେଲେ ଦାନ ଦେବା ଉଚିତ ନୁହ । ୪୬ ।

ଶ୍ରୀବିଦ୍ୟାର ମନ୍ତ୍ରରାଜ ବା ଶ୍ରେଷ୍ଠମନ୍ତ୍ର ଯେ ଜାଣେ, ଶ୍ରୀଚକ୍ର ପୂଜା ଯେ କରେ ଏବଂ ସହସ୍ରନାମ କୀର୍ତ୍ତନ କରେ, ସେ ହିଁ ସତ୍ପାତ୍ର ବା ଉପଯୁକ୍ତ ପାତ୍ର ବୋଲି ପଣ୍ଡିତଗଣ କୁହିଥାଆନ୍ତି । ତେଣୁ ତାଙ୍କୁ ହିଁ ଶ୍ରୀଦେବୀ (ଷୋଡ଼ଶୀ ଲଳିତା)ଙ୍କର ପ୍ରୀତି ବା ସନ୍ତୋଷକାମନା କରୁଥିବା ବ୍ୟକ୍ତି ଦାନ ଦେବା ଉଚିତ । ୪୩-୪୪ ।

ନ କୀର୍ତ୍ତୟତି ନାମାନି ମନ୍ତ୍ରରାଜଂ ନ ବେତ୍ତି ଯଃ ।
ପଶୁତୁଲ୍ୟଃ ସ ବିଜ୍ଞେୟଃ ତସ୍ମୈ ଦତ୍ତଂ ନିରର୍ଥକମ୍ । ୪୫ ।
ପରୀକ୍ଷ୍ୟ ବିଦ୍ୟାବିଦୁଷସ୍ତେଭ୍ୟୋ ଦଦ୍ୟାଦ୍ୱିଚକ୍ଷଣଃ । ୪୬ ।
ଶ୍ରୀମନ୍ତ୍ରରାଜସଦୃଶୋ ଯଥା ମନ୍ତ୍ରୋ ନ ବିଦ୍ୟତେ ।
ଦେବତା ଲଲିତାତୁଲ୍ୟା ଯଥା ନାସ୍ତି ଘଟୋଦ୍ଭବ । ୪୭ ।
ରହସ୍ୟନାମସାହସ୍ରତୁଲ୍ୟା ନାସ୍ତି ତଥା ସ୍ତୁତିଃ । ୪୮ ।
ଲିଖିତ୍ୱା ପୁସ୍ତକେ ଯସ୍ତୁ ନାମସାହସ୍ରମୁତ୍ତମମ୍ ।
ସମର୍ଚ୍ଚୟେତ୍ ସଦା ଭକ୍ତ୍ୟା ତସ୍ୟ ତୁଷ୍ୟତି ସୁନ୍ଦରୀ । ୪୯ ।
ବହୁନାତ୍ର କମୁକ୍ତେନ ଶୃଣୁ ତ୍ୱଂ କୁମ୍ଭସମ୍ଭବ । ୫୦ ।
ନାନେନ ସଦୃଶଂ ସ୍ତୋତ୍ରଂ ସର୍ବତନ୍ତ୍ରେଷୁ ଦୃଶ୍ୟତେ ।
ତସ୍ମାଦୁପାସକୋ ନିତ୍ୟଂ କୀର୍ତ୍ତୟେଦିଦମାଦରାତ୍ । ୫୧ ।
ଏଭିର୍ନାମସହସ୍ରୈସ୍ତୁ ଶ୍ରୀଚକ୍ରଂ ଯୋଽର୍ଚ୍ଚୟେତ୍ସକୃତ୍ ।
ପଦ୍ମୈର୍ବା ତୁଳସୀପୁଷ୍ପୈଃ କହ୍ଲାରୈର୍ବା କଦମ୍ବକୈଃ । ୫୨ ।

---

ଯେଉଁଲୋକ ଦେବୀ ଲଳିତାଙ୍କର ସହସ୍ର ନାମ କୀର୍ତ୍ତନ କରେ ନାହିଁ ଓ ମନ୍ତ୍ରରାଜ ଜାଣେ ନାହିଁ ସେ ପଶୁସହ ସମାନ ବୋଲି ଜାଣିବ । ତାକୁ ଦାନ ଦେବା ନିଷ୍ଫଳ ଅଟେ । ବୁଦ୍ଧିମାନ୍ ଲୋକ ପରୀକ୍ଷାକରି ଶ୍ରୀବିଦ୍ୟା ଜାଣିଥିବା ବିଦ୍ୱାନ୍‌ଙ୍କୁ ଦାନ ଦେବା ଉଚିତ । ୪୫-୪୬ ।

ହେ ଅଗସ୍ତ୍ୟ, ଯେପରି ଶ୍ରୀବିଦ୍ୟାର ମନ୍ତ୍ରରାଜ ପରି ମନ୍ତ୍ର ନାହିଁ, ସେପରି ଲିତାଙ୍କ ଭଳି ଦେବୀ ନାହାନ୍ତି । ୪୭ ।

ଲଳିତାଙ୍କର ରହସ୍ୟ ସହସ୍ର ନାମ ପରି ସ୍ତୁତି ନାହିଁ । ୪୮ ।

ଏହି ଉତ୍ତମ ସହସ୍ର ନାମକୁ ପୁସ୍ତକରେ ଲେଖି ଯେ ଅର୍ଚ୍ଚନା କରେ, ତାହା ଉପରେ ସୁନ୍ଦରୀ ଦେବୀଲଳିତା ସଂତୁଷ୍ଟ ହୁଅନ୍ତି । ୪୯ ।

ହେକୁମ୍ଭଜ ଅଗସ୍ତ୍ୟ ଶୁଣ, ଏ ବିଷୟରେ ଅଧିକ କ'ଣ କହିବି ? । ୫୦ ।

ସକଳ ତନ୍ତ୍ର ବା ଶାସ୍ତ୍ରମାନଙ୍କର ଏହାର ସଦୃଶ ସ୍ତୋତ୍ର ନାହିଁ । ତେଣୁ ଉପାସକ ଏହାକୁ ଆଦର ସହକାରେ ନିତ୍ୟ ପାଠକରିବା ଉଚିତ ।।୫୧।।

ଏହି ସହସ୍ର ନାମରେ ଯେ ଶ୍ରୀଚକ୍ରକୁ ଥରେ ପଦ୍ମଫୁଲ ବା ତୁଳସୀ-ମଞ୍ଜରୀ, ଶ୍ୱେତପଦ୍ମ ବା ବିବିଧ ପୁଷ୍ପସମୂହ (କଦମ୍ବ ଫୁଲ) ଦ୍ୱାରା ଯେ

